# ଜିହାଦ୍ ଓ ଆତଙ୍କବାଦ

ଶକୀଲ ଅହମଦ



ଇକ୍‌ରା ରିସର୍ଚ୍ଚ ଏକାଡେମୀ
RESEARCH ACADEMY
www.iqraresearch.net

# ଜିହାଦ୍ ଓ ଆତଙ୍କବାଦ

ଲେଖକ :
**ଶକୀଲ ଅହମଦ**



ପ୍ରକାଶକ :
**ଇକ୍‌ରା ରିସର୍ଚ୍ଚ ଏକାଡେମୀ**
ମେଟ୍ରୋ ମଞ୍ଜିଲ, ଦିଓ୍ୱାନ ବଜାର
କଟକ - ୭୫୩ ୦୦୧

**ପ୍ରଥମ ସଂସ୍କରଣ : ୨୦୧୩**

ଅକ୍ଷରସଜ୍ଜା :
**ସାହୁ କମ୍ପ୍ୟୁଟର ୟୁନିଟ୍, କଟକ**

ମୁଦ୍ରଣ :
**ଜଗନ୍ନାଥ ପ୍ରୋସେସ୍, କଟକ**

ମୂଲ୍ୟ :
ଟ.୪୦.୦୦

# JIHAD O' ATANKABAD

**Author :**
Shakeel Ahmed



**Publisher :**
**IQRA RESEARCH ACADEMY**
Metro Manzil, Dewan Bazar
Cuttack-753 001

**New Edition : 2013**

**Laser Typeset :**
Sahoo Computer Unit, Cuttack

**Printers :**
Jagannath Process, Cuttack

**Price : 40.00**

**ISBN : 81-9014409-X**

# ପ୍ରକାଶକଙ୍କ କଲମରୁ

ଗବେଷକ ଶକୀଲ ଅହମଦଙ୍କର ସଦ୍ୟତମ କୃତି 'ଜିହାଦ ଓ ଆତଙ୍କବାଦ' ପୁସ୍ତକଟି ଓଡିଶାର ପାଠକ ବନ୍ଧୁମାନଙ୍କୁ ଉପହାର ଦେଇ ଆମେ ଭାରି ଆନନ୍ଦିତ । ଇସଲାମ ଧର୍ମ ସମ୍ପର୍କରେ ଥିବା ଭ୍ରାନ୍ତିଗୁଡିକୁ ଦୂର କରିବା ସହ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଶାନ୍ତି ଓ ସଂହତି ପ୍ରତିଷ୍ଠା କରିବାଲାଗି ଲେଖକ ନିରନ୍ତର ଲେଖନୀ ଚାଳନା କରିଆସୁଛନ୍ତି । ଇକ୍‌ରା ରିସର୍ଚ୍ଚ ଏକାଡେମୀ ପକ୍ଷରୁ ପ୍ରକାଶିତ ଏହା ତାଙ୍କର ଷଷ୍ଠ ପୁସ୍ତକ । ଏହା ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ମଧ୍ୟ ତାଙ୍କର ଲେଖା ପ୍ରକାଶିତ ହୁଏ।। ଧର୍ମର ବିଭିନ୍ନ ତତ୍ତ୍ୱକୁ ସରଳ ଭାଷାରେ ଏବଂ ଆକର୍ଷଣୀୟ ଶୈଳୀରେ ପାଠକଙ୍କ ସମ୍ମୁଖରେ ରଖିବା ତାଙ୍କର ବୈଶିଷ୍ଟ୍ୟ, ଯାହାଫଳରେ ତାଙ୍କ ଲେଖାଗୁଡିକ ସବୁ ବର୍ଗର ପାଠକ-ପାଠିକାଙ୍କ ମନକୁ ଛୁଇଁପାରିଛି । ପ୍ରସ୍ତୁତ ପୁସ୍ତକଟି ବର୍ତ୍ତମାନ ସମୟର ଏକ ବହୁଚର୍ଚ୍ଚିତ ପ୍ରସଙ୍ଗ ଉପରେ ଆଲୋଚନା । ଜିହାଦ୍‌ର ତାତ୍ପର୍ଯ୍ୟ ବର୍ଣ୍ଣନା କରିବା ସହିତ ଇସଲାମ ଯୁଦ୍ଧତତ୍ତ୍ୱର ତୁଳନାତ୍ମକ ବ୍ୟାଖ୍ୟା କରି ଲେଖକ ଧର୍ମଯୁଦ୍ଧ ଓ ଆତଙ୍କବାଦ ମଧ୍ୟରେ ଥିବା ପ୍ରଭେଦକୁ ସ୍ପଷ୍ଟ କରିଛନ୍ତି ।

ପୁସ୍ତକଟି ଓଡିଶାର ବିଶିଷ୍ଟ ବିଦ୍ୱାନ ଓ ଶାସ୍ତ୍ରବିତ୍‌ମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ । ଆମର ବିଶ୍ୱାସ, ଏହା ଜିହାଦ୍ ସମ୍ପର୍କରେ ଥିବା ଅନେକ ଭ୍ରାନ୍ତି ଦୂର କରିବାରେ ସମର୍ଥ ହେବ । ଲେଖକଙ୍କର ଯାତ୍ରା ଓଡିଆ ଇସଲାମୀ ସାହିତ୍ୟଜଗତକୁ ଆଲୋକିତ କରିବା ସହ ଜାତୀୟ ସଂହତିକୁ ମଧ୍ୟ ସୁଦୃଢ଼ କରୁ, ଏହାହିଁ କାମନା ।

ମୁଫ୍‌ତି ଅବ୍ଦୁର ରହମାନ ନଦଭି<br>
**ସି.ଇ.ଓ, ଇକ୍‌ରା ରିସର୍ଚ୍ଚ ଏକାଡେମୀ**

ଡଃ ବୈଷ୍ଣବ ଚରଣ ସାମଲ
ଅବସରପ୍ରାପ୍ତ ପ୍ରଫେସର, ବିଶ୍ୱଭାରତୀ, ଶାନ୍ତିନିକେତନ

# ଅଭିମତ

ଶ୍ରୀଯୁକ୍ତ ଶକୀଲ ଅହମଦ ଜଣେ ବିଶିଷ୍ଟ ବିଦ୍ୱାନ ଓ ଗବେଷକ । ନୀରବ ତାଙ୍କର ସାଧନା । ନୀରବ ତାଙ୍କର ଅଧ୍ୟୟନ ଓ ଗବେଷଣା । ଇସଲାମ ଧର୍ମର ତତ୍ତ୍ୱ, ଦର୍ଶନ ଓ ଆଭିମୁଖ୍ୟ ସମ୍ପର୍କରେ ଜାଣିବା ପାଇଁ ସେ ପବିତ୍ର କୁରଆନ, ହଦିସ ଆଦି ନାନା ଗ୍ରନ୍ଥକୁ ଅଧ୍ୟୟନ କରିବା ସହିତ ସନାତନ ହିନ୍ଦୁ ଧର୍ମର ତତ୍ତ୍ୱ, ଦର୍ଶନ ଓ ମୀମାଂସା ଗ୍ରନ୍ଥକୁ ଅଧ୍ୟୟନ କରିଛନ୍ତି । ଖ୍ରୀଷ୍ଟଧର୍ମର ପ୍ରଧାନ ଗ୍ରନ୍ଥ ବାଇବଲ୍‌କୁ ମଧ୍ୟ ଅଧ୍ୟୟନ ଓ ଅନୁଶୀଳନ କରିଛନ୍ତି । ଧର୍ମକୁ ସେ ସାମ୍ପ୍ରଦାୟିକ ସଂକୀର୍ଣ୍ଣ ଗଣ୍ଡି ଭିତରୁ ମୁକ୍ତ କରି ସକଳ ବିଶିଷ୍ଟ ଧର୍ମର ତତ୍ତ୍ୱ ଓ ଦର୍ଶନ ଆଧାରରେ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ ସବୁ ଧର୍ମର ମର୍ମ ଓ ଆଭିମୁଖ୍ୟ ସମାନ । ପ୍ରତ୍ୟେକ ଧର୍ମ ଗୋଟିଏ ଗୋଟିଏ ମାର୍ଗ, ମାତ୍ର ସମସ୍ତ ଧର୍ମର ଲକ୍ଷ୍ୟ ଏକ । ସେହି 'ଏକ'ରେ ସମସ୍ତଙ୍କର ମହାମିଳନ । ସେଠି ଭେଦ ନାହିଁ। ଶ୍ରୀ ଶକୀଲ ଅହମଦ ଅତି ସ୍ୱଷ୍ଟ ଭାବରେ ତାଙ୍କ ପ୍ରଣୀତ ବିଭିନ୍ନ ପୁସ୍ତକରେ ଇସଲାମ ଧର୍ମର ମାନବ-କଲ୍ୟାଣକାମୀ ଦୃଷ୍ଟିକୋଣକୁ ଦର୍ଶାଇଦେବା ସହିତ ବେଦ, ବେଦାନ୍ତ, ଗୀତା, ବାଇବେଲ ଆଦି ଗ୍ରନ୍ଥର ମାନବ ଓ ବିଶ୍ୱ ଅଭିମୁଖୀ ଦୃଷ୍ଟିକୋଣକୁ ତୁଳନାତ୍ମକ ଭାବରେ ବିଚାର କରିଅଛନ୍ତି । ଇସଲାମ ଧର୍ମର ତତ୍ତ୍ୱ ଓ ଦର୍ଶନକୁ ନ ଜାଣି ଯେଉଁ ଭ୍ରମ ଧାରଣାର ବଶବର୍ତ୍ତୀ ହୋଇ କିଛି ବିଦ୍ୱାନ ଓ ସାଧାରଣ ଲୋକେ ଇସଲାମ ଧର୍ମ ସମ୍ପର୍କରେ ଭ୍ରାନ୍ତ ମତ ପ୍ରକାଶ କରିଛନ୍ତି, ତାହାକୁ ସେ ଯୁକ୍ତିଯୁକ୍ତ ଭାବରେ ଖଣ୍ଡନ କରି ପ୍ରକୃତ ସତ୍ୟକୁ ଦର୍ଶାଇ ଦେଇଛନ୍ତି । ତାଙ୍କ ରଚିତ ବିବିଧ ପୁସ୍ତକ ଇସଲାମ ଧର୍ମକୁ ଜାଣିବା ପାଇଁ ଗୋଟିଏ ଗୋଟିଏ ସାର୍ଥକ ସୃଷ୍ଟି । ଏହି ଆଭିମୁଖ୍ୟର ସଦ୍ୟତମ ପ୍ରକାଶ 'ଜିହାଦ୍ ଓ ଆତଙ୍କବାଦ' ।

ଶ୍ରୀଯୁକ୍ତ ଶକୀଲ ଅହମଦ ଓଡ଼ିଆ ଭାଷାରେ ଇସଲାମୀ ସାହିତ୍ୟର ଅଭାବକୁ ଦୂର କରିବାପାଇଁ କେବଳ ପୁସ୍ତକ ପ୍ରଣୟନ କରୁନାହାନ୍ତି, ଇସଲାମ ଧର୍ମ ସମ୍ପର୍କରେ ଯେଉଁସବୁ ଭ୍ରାନ୍ତି ସୃଷ୍ଟି କରାଯାଇଛି ଓ କରାଯାଉଛି, ତାହାକୁ ଦୂର କରି ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ; ବିଶେଷତଃ ହିନ୍ଦୁ ଓ ଇସଲାମ ସମ୍ପ୍ରଦାୟ ମଧ୍ୟରେ ସଂହତି ପ୍ରତିଷ୍ଠା ପାଇଁ ସେ ଉଦ୍ୟମ ଜାରି ରଖିଛନ୍ତି । ହିନ୍ଦୁ ଓ ମୁସଲିମ ଭାଇଚାରା ପ୍ରତିଷ୍ଠା

ତାଙ୍କର ମୁଖ୍ୟ ଲକ୍ଷ୍ୟ । ସେ ଉକ୍ତ ପୁସ୍ତକରେ ଦର୍ଶାଇଦେଇଛନ୍ତି ଯେ ଜିହାଦ ଓ ଆତଙ୍କବାଦ ଏକା କଥା ନୁହେଁ । ବର୍ତ୍ତମାନ ସମଗ୍ର ବିଶ୍ୱରେ ଆତଙ୍କବାଦ ଗୁରୁତର ବାତାବରଣ ସୃଷ୍ଟି କରିଛି । ଆତଙ୍କବାଦ ସମ୍ପୂର୍ଣ୍ଣ ହିଂସାତ୍ମକ । ଏଥିରେ କୌଣସି ମୂଲ୍ୟବୋଧ ନଥାଏ । ଆତଙ୍କବାଦ ସବୁ ଧର୍ମରେ ନିନ୍ଦନୀୟ । ଏହା ଅମାନୁଷିକ । ଇସଲାମ ଧର୍ମ ମଧ୍ୟ ଆତଙ୍କବାଦକୁ ପ୍ରଶ୍ରୟ ଦିଏ ନାହିଁ, ଅଥଚ କିଛି ୟୁରୋପୀୟ ବିଦ୍ୱାନ ଓ ଭାରତର ମଧ୍ୟ କିଛି ବ୍ୟକ୍ତି ଇସଲାମକୁ ହିଂସା ଓ ଆତଙ୍କବାଦ ସହିତ ଯୋଡି ଦେଇଛନ୍ତି । ଇସଲାମ ଆଦୌ ହିଂସାକୁ ପ୍ରଶ୍ରୟ ଦେଇନାହିଁ । ପବିତ୍ର କୁରଆନ ଗ୍ରନ୍ଥରେ ହିଂସାକୁ ନିନ୍ଦା କରାଯାଇଛି । ଯେତେବେଳେ କୌଣସି ବ୍ୟକ୍ତି ବା ବ୍ୟକ୍ତିସମୂହ ଅନ୍ୟାୟ ଭାବରେ ହିଂସାକାଣ୍ଡ ଘଟାନ୍ତି, ଯାବତୀୟ ନାରକୀୟତା ସୃଷ୍ଟି କରନ୍ତି ଏବଂ ସେମାନଙ୍କର ହୃଦୟ ପରିବର୍ତ୍ତନ ଆଦୌ ସମ୍ଭବ ନୁହେଁ, ସେମାନଙ୍କୁ ବିନାଶ କରିଦେବାପାଇଁ ଗୀତା ଆହ୍ୱାନ ଦେଇଛନ୍ତି । କୁରଆନରେ ମଧ୍ୟ ସେଇ କଥା କୁହାଯାଇଛି । ଏପରି ଯୁଦ୍ଧ ବା ସଂଗ୍ରାମର ଲକ୍ଷ୍ୟ ସଇତାନ ବା ସ୍ୱେଚ୍ଛାଚାରୀଙ୍କ ବିନାଶ ଓ ସମାଜରେ ଶାନ୍ତି-ସ୍ଥାପନ । ତେଣୁ ଏହା ସନ୍ତ୍ରାସ ନୁହେଁ; ଧର୍ମଯୁଦ୍ଧ-ଜିହାଦ । ଇସଲାମ ଧର୍ମରେ ଜିହାଦ ଅର୍ଥ ନିରର୍ଥକ ଅମାନୁଷିକ ହତ୍ୟାକାଣ୍ଡ ନୁହେଁ । ଏଥିରେ ବ୍ୟକ୍ତି-ସ୍ୱାର୍ଥର ସ୍ଥାନ ନଥାଏ; ଥାଏ ସମୂହ ସ୍ୱାର୍ଥ, ସମୂହ କଲ୍ୟାଣ। ତେଣୁ ଦିବ୍ୟଗ୍ରନ୍ଥରେ ଅନ୍ୟାୟ ଓ ଅତ୍ୟାଚାର ବିରୋଧରେ ଯୁଦ୍ଧ କରିବାପାଇଁ କୁହାଯାଇଛି । ଏହି କଥା ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ଅର୍ଜୁନଙ୍କୁ । ମୋହମୁକ୍ତ ନହେଲେ, ବ୍ୟକ୍ତି-ସ୍ୱାର୍ଥକୁ ନ ଛାଡ଼ିଲେ, ଜଣେ ଧର୍ମଯୁଦ୍ଧ କରିପାରେ ନାହିଁ । ତେଣୁ ଗୀତା ଯୋଦ୍ଧାଙ୍କୁ ମୋହମୁକ୍ତ ହେବାକୁ ପ୍ରେରଣା ଦେଇ ଧର୍ମଯୁଦ୍ଧ ପାଇଁ ଆହ୍ୱାନ ଜଣାଇଛନ୍ତି । କେବଳ ଗୀତାରେ ନୁହେଁ, ବେଦରେ ମଧ୍ୟ ଦୁଷ୍ଟଦମନ ଓ ପ୍ରଜାମାନଙ୍କ ସୁରକ୍ଷା ପାଇଁ ଯୁଦ୍ଧ କରିବାକୁ କୁହାଯାଇଛି । ବାଇବଲ୍‌ରେ ମଧ୍ୟ ଧର୍ମଯୁଦ୍ଧ ପାଇଁ ପ୍ରେରଣା ଅଛି । ଇସଲାମ ଧର୍ମରେ ସେହି ଏକା କଥା ଅଛି । ଏହି ଧର୍ମରେ ମଣିଷକୁ ପ୍ରାଧାନ୍ୟ ଦିଆଯାଇଛି । ଅନ୍ୟାୟରେ କାହାକୁ ହତ୍ୟା କରିବା ପାପ ବୋଲି କୁରଆନ ଘୋଷଣା କରିଅଛନ୍ତି। ନରହତ୍ୟା କରିବା, ମିଥ୍ୟା ସାକ୍ଷ୍ୟ ପ୍ରଦାନ କରିବା, ପିତାମାତାଙ୍କୁ ଅବହେଳା କରିବା ଇତ୍ୟାଦି ମହାପାପ । ସକଳ ଜୀବ ପ୍ରତି ଦୟାଭାବ ପୋଷଣ କରିବା ପାଇଁ ମଧ୍ୟ ପବିତ୍ର କୁରଆନ କହିଛନ୍ତି । ଯେଉଁ ବ୍ୟକ୍ତି ଅନ୍ୟାୟ କରେ,

ଯାବତୀୟ ପାପ କରେ, ଅମାନୁଷିକ ଗଣହତ୍ୟା କରେ, ସେହି ବ୍ୟକ୍ତିର ବିନାଶ ପାଇଁ ପବିତ୍ର କୁରଆନ ଯେପରି ନିର୍ଦ୍ଦେଶ ଦେଇଛନ୍ତି, ସେହପରି ଅନ୍ୟ ଗ୍ରନ୍ଥମାନେ ମଧ୍ୟ କହିଛନ୍ତି । ଧର୍ମରକ୍ଷା, ଆତ୍ମରକ୍ଷା, ଅନ୍ୟାୟର ବିଲୋପ ପାଇଁ ଈଶ୍ୱରଦୂତ ଯୁଦ୍ଧଘୋଷଣା କରିଥିଲେ ଓ ନିଜେ ମଧ୍ୟ କୁରୈଶମାନଙ୍କ ସହିତ ଯୁଦ୍ଧ କରିଥିଲେ । ଗୀତାରେ ଶ୍ରୀକୃଷ୍ଣଙ୍କର ଯୁଦ୍ଧ ପାଇଁ ଉଦବୋଧନ ପରି ସେ ମଧ୍ୟ ଉଦବୋଧନ ଦେଇଛନ୍ତି ସଇତାନମାନଙ୍କୁ ହତ୍ୟା କରିବା ପାଇଁ । ବାରମ୍ବାର ତାଙ୍କୁ ଅସ୍ତ୍ର ଧରିବାକୁ ହୋଇଛି । ଧର୍ମଯୁଦ୍ଧ ପାଇଁ ମଧ୍ୟ ସେ କେତେକ ସର୍ତ୍ତ ଆରୋପ କରିଥିଲେ । ସେ କହିଥିଲେ ଯେ ବ୍ୟକ୍ତି ବା ଗୋଷ୍ଠୀର ସ୍ୱାର୍ଥ ପାଇଁ ଯୁଦ୍ଧ ଜିହାଦ ନୁହେଁ । ଜିହାଦ ହେଉଛି ଧର୍ମାଚାର। ସାଧାରଣ ନାଗରିକ, ନାରୀ, ଶିଶୁ, ବୃଦ୍ଧ ଓ ରୋଗୀଙ୍କୁ ହତ୍ୟା ଜିହାଦ ନୁହେଁ । କୌଣସି ଧର୍ମପୀଠ ବା ଉପାସନା କେନ୍ଦ୍ରକୁ ଧ୍ୱଂସ କରିବା ମଧ୍ୟ ଜିହାଦ ନୁହେଁ । ଗୃହପାଳିତ ପଶୁ, ଫଳନ୍ତି ବୃକ୍ଷକୁ ନଷ୍ଟ କରିବା ଜିହାଦର ପରିପନ୍ଥୀ । ଧର୍ମାନ୍ତରୀକରଣ ପାଇଁ ବଳପ୍ରୟୋଗ ମଧ୍ୟ ନିନ୍ଦନୀୟ ।

ଜିହାଦର ତାତ୍ତ୍ୱିକ ବ୍ୟାଖ୍ୟା ସହିତ ବିଭିନ୍ନ ଧର୍ମଗ୍ରନ୍ଥରେ ବର୍ଣ୍ଣିତ ଧର୍ମଯୁଦ୍ଧର ବୈଶିଷ୍ଟ୍ୟ ସମ୍ପର୍କରେ ଯୁକ୍ତିଯୁକ୍ତ ଭାବରେ ଶକୀଲ ଅହମଦ ଆଲୋଚନା କରିଅଛନ୍ତି । ପ୍ରସଙ୍ଗକ୍ରମେ କେତେକ ଐତିହାସିକ ଓ ବିଦ୍ୱାନ ଇସଲାମ ଧର୍ମ ସଂପର୍କରେ ଓ ଟିପୁ ସୁଲ୍‌ତାନ ତଥା ଔରଙ୍ଗଜେବଙ୍କ ସମ୍ପର୍କରେ ଯେଉଁସବୁ ଭ୍ରମପୂର୍ଣ୍ଣ ମନ୍ତବ୍ୟ ଦେଇଛନ୍ତି ତାହାକୁ ଐତିହାସିକ ତଥ୍ୟ ଭିତ୍ତିରେ ସେ ଖଣ୍ଡନ କରିଅଛନ୍ତି ।

ପୁସ୍ତକଟି କ୍ଷୁଦ୍ର, ମାତ୍ର ତାହାର ତାତ୍ତ୍ୱିକ ଆବେଦନ ସୁଗଭୀର । ଯେପରି ଭାବରେ ଇସଲାମ ଧର୍ମ ପ୍ରତି ଥିବା କେତେକ ଭ୍ରାନ୍ତିକୁ ସେ ଖଣ୍ଡନ କରି ଜିହାଦର ଯଥାର୍ଥ ତାତ୍ତ୍ୱିକ ଦିଗକୁ ଦର୍ଶାଇ ଦେଇଛନ୍ତି, ତାହା ବାସ୍ତବିକ ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ପୁସ୍ତକ ହିନ୍ଦୁ ମୁସଲମାନ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଯେ ଏକ ନୂତନ ଆଲୋକ ବର୍ତ୍ତିକା ହେବ; ସନ୍ଦେହ ନାହିଁ । ମୁଁ ଏହାର ବହୁଳ ପ୍ରକାଶ ଓ ପ୍ରଚାର କାମନା କରୁଛି ।

(ବୈଷ୍ଣବ ଚରଣ ସାମଲ)

ଡଃ ବିଜୟାନନ୍ଦ ସିଂହ
ଉପସଭାପତି, ଉତ୍କଳ ସାହିତ୍ୟ ସମାଜ, କଟକ

## ସମଗ୍ର ପୃଥିବୀ ଏକ ପରିବାରରେ ପରିଣତ ହେଉ

ସୁଲେଖକ ଶକୀଲ ଅହମଦ ନିରନ୍ତର ଲେଖନୀ ଚାଳନା କରି ଓଡିଆ ସାହିତ୍ୟକୁ ସମୃଦ୍ଧ କରି ଆସୁଛନ୍ତି । ଶ୍ରୀ ଅହମଦ ସମକାଳର ପ୍ରସଙ୍ଗ ନେଇ ପୁସ୍ତକ ରଚନା କରୁଛନ୍ତି। ସାହିତ୍ୟର ଲକ୍ଷ୍ୟ ସମାଜର ହିତ ସାଧନ କରିବା, ମଣିଷର କଲ୍ୟାଣ ସାଧନ କରିବା । ଏଥିପ୍ରତି ଶକୀଲ ଅହମଦ ସଚେତନ । ସାହିତ୍ୟ ରଚନା କରିବାକୁ ପ୍ରୟାସ କରି ସେ ସାମାଜିକ ମୂଲ୍ୟବୋଧକୁ ଗୁରୁତ୍ୱ ଦେଇଛନ୍ତି । ସବୁ ମଣିଷମାନଙ୍କ ମଧ୍ୟରେ ସଂହତି ଓ ସଂପ୍ରୀତି ପାଇଁ ତାଙ୍କର ଆନୁଷ୍ଠାନିକ ପ୍ରଚେଷ୍ଟା ଅଭିନନ୍ଦନୀୟ । ଏହି କାର୍ଯ୍ୟଧାରାର ଏକ ଅଂଶବିଶେଷ ହେଉଛି 'ଜିହାଦ ଓ ଆତଙ୍କବାଦ' ସମ୍ପର୍କରେ ପୁସ୍ତକ ରଚନା।

ଶ୍ରୀ ଶକୀଲ ଆତଙ୍କବାଦକୁ ଏକ ଘୃଣ୍ୟ ଓ ଜଘନ୍ୟ କାର୍ଯ୍ୟ ବୋଲି ବର୍ଣ୍ଣନା କରିଛନ୍ତି । ଯୁଦ୍ଧ ଦ୍ୱାରା ଦେଶର ପ୍ରଗତି ହୁଏ ନାହିଁ, ବରଂ ଶାନ୍ତି ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ଦ୍ୱାରା ହିଁ ସମାଜର ଓ ଦେଶର ଉନ୍ନତି ହୋଇଥାଏ । ପୁଣି ସେ ଜିହାଦ ସମ୍ପର୍କରେ କହିଛନ୍ତି 'ଅତ୍ୟାଚାର ଜିହାଦ ନୁହେଁ ବରଂ ଅତ୍ୟାଚାର ବିରୋଧରେ ହେଉଥିବା ସଂଗ୍ରାମର ନାମ ଜିହାଦ୍ । ଅଶାନ୍ତି ଓ ଆତଙ୍କ ସୃଷ୍ଟି କରିବା ଜିହାଦ୍ ନୁହେଁ, ବରଂ ଏହା ବିରୋଧରେ ଲଢିବା ଜିହାଦ୍ । ଜିହାଦ୍ ଏକ ଉପାସନା ଏବଂ ଏକ ପବିତ୍ର ଧର୍ମାଚାର ।' ଏହିସବୁ ପ୍ରସଙ୍ଗ ଆଲୋଚନା କଲେ ଶ୍ରୀ ଶକୀଲଙ୍କ ଉଦ୍ୟମ ମାନବିକ ସ୍ୱାର୍ଥ ପାଇଁ ବୋଲି ସହଜରେ ବୁଝାପଡେ ।

ଏହିପରି ସାରସ୍ୱତ ସୃଷ୍ଟି ପାଇଁ ଶ୍ରୀ ଶକୀଲ ଅହମଦଙ୍କୁ ମୁଁ ଧନ୍ୟବାଦ ଜଣାଉଛି । ତାଙ୍କର ମହନୀୟ ଉଦ୍ୟମ ସଫଳ ହେଉ । ପୃଥିବୀର ହିଂସା, ଦ୍ୱେଷ, ସାଂପ୍ରଦାୟିକତା, ଧର୍ମାନ୍ଧତା, ଅନ୍ୟାୟ, ଅନୀତି ଲୋପ ପାଇ ସମଗ୍ର ପୃଥିବୀ ଏକ ପରିବାରରେ ପରିଣତ ହେଉ।

ବିଜୟାନନ୍ଦ ସିଂହ

(ଡଃ ବିଜୟାନନ୍ଦ ସିଂହ)

**ଡକ୍ଟର କୃଷ୍ଣଚରଣ ବେହେରା**
ସଭାପତି, ଓଡ଼ିଆ ଗବେଷଣା ପରିଷଦ, କଟକ

## ଆଖି ଖୋଲିଦେଲା ଭଳି ଏକ ପୁସ୍ତକ

ପୃଥିବୀର ଏକ ସଙ୍ଗଠିତ ଆନୁଷ୍ଠାନିକ ଧର୍ମ ଭାବରେ ଇସଲାମ ସୁପରିଚିତ । ଭାରତରେ ଏବଂ ସେହି ସୂତ୍ରରେ ଓଡିଶାରେ ବହୁ ପୂର୍ବରୁ ଏହି ଧର୍ମ ପ୍ରସାରିତ ହୋଇଛି । ୧୫୬୮ ମସିହାରୁ ପ୍ରାୟ ଦୁଇ ଶହ ବର୍ଷକାଳ (ଆଫଗାନ ଓ ମୋଗଲ ରାଜତ୍ୱ) ଏହି ରାଜ୍ୟରେ ମୁସଲମାନ ଆଧିପତ୍ୟ ପ୍ରତିଷ୍ଠିତ ହୋଇଥିଲା । ରାଜାନୁଗତ ଧର୍ମରୀତିରେ ସେହି ସମୟରୁ ଏଠାରେ ଇସଲାମ ଧର୍ମ ପ୍ରସାରିତ ହୋଇଥିଲା । ଏବେ ରାଜ୍ୟରେ ପ୍ରାୟ ଚାରିକୋଟି ଜନସଂଖ୍ୟା ମଧ୍ୟରେ ଇସଲାମ ଧର୍ମାବଲମ୍ବୀଙ୍କ ସଂଖ୍ୟା ଶତକଡ଼ା ପ୍ରାୟ ଦୁଇ ବୋଲି ଜଣାପଡିଛି ।

ସମଗ୍ର ଭାରତରେ ହିନ୍ଦୁ ଓ ଇସଲାମୀ ସଂସ୍କୃତି ମଧ୍ୟରେ ମୈତ୍ରୀ-ପ୍ରୀତିର ଯେଉଁ ମହାଯଜ୍ଞ ଅନୁଷ୍ଠିତ ହୋଇ ଚାଲିଥିଲା, ଓଡିଶା ମଧ୍ୟ ସେହି ଯଜ୍ଞାଗ୍ନିର ଆଲୋକ ସ୍ପର୍ଶ ଲାଭ କରିଥିଲା । ହିନ୍ଦୁ ଓ ମୁସଲିମ୍ ଦୁଇ ସମ୍ପ୍ରଦାୟ ମଧ୍ୟରେ ଏଠାରେ ବେଳେବେଳେ ଧର୍ମଗତ ବିଦ୍ୱେଷ ଦେଖାଦେଉଥିଲା ସତ୍ୟ, ମନ୍ଦିର ସ୍ଥାନରେ ମସଜିଦ୍ ଓ ମସଜିଦ ସ୍ଥାନରେ ମନ୍ଦିର ନିର୍ମିତ ହୋଇଥିଲା ଠିକ୍, ଶ୍ରୀ ଶ୍ରୀ ରସିକାନନ୍ଦ ଦେବ ଗୋସ୍ୱାମୀଙ୍କ ମହିମାରେ ବାଣପୁରର ଶହ ଶହ ମୁସଲମାନ ବୈଷ୍ଣବ ହୋଇ ଯାଇଥିଲେ କିମ୍ବା ମହମ୍ମଦ ତକ୍ଵିଙ୍କର ବାଧ-ବାଧକତାରେ ଗଜପତି ଦ୍ୱିତୀୟ ରାମଚନ୍ଦ୍ରଦେବ 'ହାଫିଜ ନାଦର୍' ପାଲଟି ଥିଲେ ସତ୍ୟ; ମାତ୍ର ଏସବୁ ଥିଲା ସାମୟିକ, କ୍ଷଣସ୍ଥାୟୀ, ଉଡନ୍ତା ମେଘ ଭଳି ଆସି ଦେଖାଦେଇ ଚାଲିଯାଉଥିଲା । ଅନ୍ୟ ଦିଗରେ ପଞ୍ଚଦଶ ଶତାବ୍ଦୀରେ କବୀର ଓ ନାନକ, ଷୋଡଶ ଶତାବ୍ଦୀରେ ଶ୍ରୀ ଚୈତନ୍ୟ ପ୍ରମୁଖ ଦୂରଦ୍ରଷ୍ଟା ମନୀଷିଗଣ ଏଠାକୁ ଆସି ବିଭିନ୍ନ ଧର୍ମ ସଂପ୍ରଦାୟ ମଧ୍ୟରେ ସହନଶୀଳତା, ଉଦାରତା, ମୈତ୍ରୀ-ପ୍ରୀତିର ବାଣୀ ପ୍ରଚାର କରିଥିଲେ । ୧୭୧୨ ମସିହାରେ ପ୍ରଥମ ମୁର୍ଶିଦ୍ କୁଲୀ ଖାଁଙ୍କର ଜମାତା ସୁଜାଉଦ୍ଦିନ୍‌ଙ୍କ ଦ୍ୱାରା କଟକରେ ଯେଉଁ 'କଦମ ରସୁଲ' ମସଜିଦ୍ ନିର୍ମିତ ହୋଇଥିଲା, ତାହା ହିନ୍ଦୁ-ମୁସଲମାନ ସମସ୍ତଙ୍କର ପୂଜ୍ୟ ଆରାଧ୍ୟ ଥିଲା । ପଣ୍ଡିତ ଗୋବିନ୍ଦ ରଥ ଊନବିଂଶ ଶତାବ୍ଦୀ ଶେଷ ଭାଗରେ ନିଜର 'କଟକ ନଗରୀ' ପୁସ୍ତିକାରେ ଏ ସମ୍ପର୍କରେ ଲେଖିଛନ୍ତି—

'କଦମ ରସୁଲ୍ ଏଥୁ ଅନ୍ତେ ଦେବରାଜ
ନମନ୍ତି ଯାହାଙ୍କ ପାଦେ ଯବନ ସମାଜ

ଭକ୍ତିଭାବେ ପୂର୍ଣ୍ଣ ହୋଇ କେତେ ହିନ୍ଦୁଜନ
କରନ୍ତି ଏଠା ମୃତ୍ତିକା କପାଳେ ଲେପନ ।
ପ୍ରକାଣ୍ଡ ଦ୍ୱାର ସମ୍ମୁଖେ ଦିଶଇ ମନ୍ଦିର
ବୃକ୍ଷରାଜି ସୁମଣ୍ଡିତ ଉଦ୍ୟାନ ରୁଚିର ।
ଏହି ଉଦ୍ୟାନେ ଯବନେ ମୃତ କଳେବର
ଅତି ସଂଭ୍ରମରେ ଆଣି ଦିଅନ୍ତି କବର ।
କିଛି କାଳ କଟକରେ ରହିଲେ ବାନ୍ଧବ
ତାଜିଆ ଯାତ୍ରାରେ ଏଥି ଦେଖିବ ଉତ୍ସବ
ଅତି ପୂର୍ବକୀର୍ତ୍ତି ଏହା ଦିଲ୍ଲୀ ବାଦସାହା
କରିଥିଲେ, ଅନ୍ୟ ସାଧ୍ୟ ନୁହଁଇଟି ଯାହା ।'

ଅରୁଣୋଦୟ ପ୍ରେସ୍, କଟକ (୧୮୯୪)

ଗତ ଊନବିଂଶ ଶତାବ୍ଦୀରେ ବ୍ରିଟିଶ ରାଜତ୍ୱ କାଳରେ ମଧ୍ୟ ଉତ୍ତର-ପୂର୍ବ ଭାରତରେ ହିନ୍ଦୁ-ମୁସଲିମ୍ ମୈତ୍ରୀ କିପରି ବଜାୟ ରହିଥିଲା, ତାହାର ପ୍ରମାଣ ମିଳେ ସୟଦ ଅମୀର ଅଲିଙ୍କ ଲେଖାରୁ । ଅମୀର ଅଲିଙ୍କ ବାପା ସୟଦ ସାଦତ୍ ଅଲି ସମ୍ବଲପୁରରେ ବିବାହ କରିଥିଲେ ଏବଂ କଟକରେ ତାଙ୍କର ଘର ଥିଲା । ଅମୀର ଅଲିଙ୍କୁ ଉଚ୍ଚ ଶିକ୍ଷା ଦେବାପାଇଁ ସେ ଯାଇ କଲିକତାରେ ବସବାସ କରିଥିଲେ । ଭାରତରେ ସୟଦ ଅମୀର ଅଲି ଜଣେ ଦୂରଦ୍ରଷ୍ଟା ବିଚକ୍ଷଣ ମୁସଲମାନ ଥିଲେ । ତାଙ୍କ ଭାଷାରେ 'ହିନ୍ଦୁ ମୁସଲମାନ ମଧ୍ୟରେ ସେତେବେଳେ କୌଣସି ବିବାଦ ନ ଥିଲା । ମସଜିଦ୍ ଆଗରେ ବାଜା ବଜାଇବା ଘେନି କୌଣସି ଦୁର୍ଘଟଣା ଘଟୁ ନଥିଲା, ଅଥବା ବକ୍ରିଦ୍ ସମୟରେ ଗୋହତ୍ୟା ଉପଲକ୍ଷେ ମନୁଷ୍ୟ ହତ୍ୟା ହେଉ ନଥିଲା । ସେତେବେଳେ ନିର୍ବାଚନକୁ କେନ୍ଦ୍ରକରି ହିନ୍ଦୁ-ମୁସଲମାନ ବିବାଦ କରିବା ଶିଖି ନ ଥିଲେ ।' (ଦ୍ରଷ୍ଟବ୍ୟ-ବାଂଲାର ମନୀଷୀ, ଲେଖକ ଅଧ୍ୟାପକ ମାଖନଲାଲ ରାୟ ଚୌଧୁରୀ, କଲିକତା, ୧୩୫୮ ସାଲ)

ଏହି ପୃଷ୍ଠଭୂମି ଉପରେ 'ଜିହାଦ୍ ଓ ଆତଙ୍କବାଦ' ପୁସ୍ତିକାର ବିଚାର କରାଯାଇପାରେ । ଭାରତରେ ତଥା ସେହି ସୂତ୍ରରେ ଓଡିଶାରେ ହିନ୍ଦୁ-ମୁସଲମାନ ଦୁଇ ସମ୍ପ୍ରଦାୟ ମଧ୍ୟରେ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଭୁଲ୍ ବୁଝାମଣା ରହି ଆସିଛି । ତାହା ଦୂର କରିବା ଉଦ୍ଦେଶ୍ୟରେ ହିଁ ଏହି ପୁସ୍ତିକାଟି ରଚନା କରିଛନ୍ତି ଶକୀଲ୍ ଅହମଦ ସାହେବ । ପୁସ୍ତିକାଟିର ଭୂମିକାରେ ସେ ସୂଚାଇଛନ୍ତି-'ଓଡିଶାରେ

ମୁସଲିମ୍ ବିଦ୍ୱାନମାନଙ୍କର ଅଭାବ ନାହିଁ । ଅଭାବ ଅଛି ଓଡିଆ ଇସ୍‌ଲାମୀ ସାହିତ୍ୟର । ଏହି ଅଭାବକୁ କିଛି ପରିମାଣରେ ଦୂର କରିବା ଏବଂ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ସଂହତି ପ୍ରତିଷ୍ଠା କରିବା ମୋର ମୁଖ୍ୟ ଉଦ୍ଦେଶ୍ୟ ।' ଉଦ୍ଦେଶ୍ୟଟି ବେଶ୍ ମହତ ! ଆପଣା ପ୍ରବନ୍ଧରେ ଶକୀଲ ସାହେବ ଭଗବତ ଗୀତା, ବାଇବଲ୍, କୁର୍‌ଆନ ଆଦି ଧର୍ମଗ୍ରନ୍ଥର ମତ ଉଦ୍ଧାର କରି ଯୁଦ୍ଧର ସକାରାତ୍ମକ ଦିଗ ପ୍ରଦର୍ଶନପୂର୍ବକ ଏହାକୁ 'ଈଶ୍ୱରଙ୍କ ଧର୍ମ ବ୍ୟବସ୍ଥାର ଗୋଟିଏ ଅଙ୍ଗ' ବୋଲି ପ୍ରତିପାଦନ କରିଛନ୍ତି । ପବିତ୍ର କୁରଆନ୍‌ରେ ହତ୍ୟା, ଭ୍ରୁଣହତ୍ୟା, ଆତ୍ମହତ୍ୟାଦି ଯେକୌଣସି ପ୍ରକାର ନରହତ୍ୟାକୁ ନିଷିଦ୍ଧ ବୋଲି ଘୋଷଣା କରାଯାଇଛି । ଏପରିକି, ଇତର ଜୀବଜନ୍ତୁଙ୍କୁ ଦୟା ଓ କରୁଣା ପ୍ରଦର୍ଶନ ପୁଣ୍ୟ କାର୍ଯ୍ୟ ବୋଲି କୁହାଯାଇଛି । ଅବଶ୍ୟ, କେତେକ କ୍ଷେତ୍ରରେ ନରହତ୍ୟାର ଯଥାର୍ଥତା ଥିବାର ଦର୍ଶାଇ ଦିଆଯାଇଛି । ଗୀତାର 'ଯୁଦ୍ଧାୟ କୃତ ନିଶ୍ଚୟ' ଶ୍ରୀକୃଷ୍ଣଙ୍କର ଅର୍ଜୁନଙ୍କୁ ପରାମର୍ଶ ସଦୃଶ, ଆବଶ୍ୟକ ପଡିଲେ ଅନ୍ୟର ମୌଳିକ ଅଧିକାର କ୍ଷୁଣ୍ଣ କରୁଥିବା ବ୍ୟକ୍ତିର ହତ୍ୟା ଦୋଷାବହ ନୁହେଁ ବୋଲି ପବିତ୍ର କୁରଆନ ମତ ପ୍ରକାଶ କରିଛନ୍ତି ।

'ଜିହାଦ'ର ପ୍ରକୃତ ତାତ୍ପର୍ଯ୍ୟ ହେଉଛି- ଈଶ୍ୱରଙ୍କ ମାର୍ଗରେ ସଂଘର୍ଷ କରିବା । ଅର୍ଥାତ୍ ସତ୍ ଜୀବନଯାପନ ପାଇଁ ମଣିଷ କରୁଥିବା ସଂଘର୍ଷ, ଇନ୍ଦ୍ରିୟ ନିଗ୍ରହ ଲାଗି କରାଯାଉଥିବା ସାଧନା, ଆତ୍ମରକ୍ଷା, ଧର୍ମରକ୍ଷା ବା ଅନ୍ୟାୟ-ଅତ୍ୟାଚାର ବିରୋଧରେ ହେଉଥିବା ସଂଘର୍ଷ ହିଁ ଜିହାଦ୍ । ଏହିଭଳି କେତୋଟି ସଂଘର୍ଷର ଉଦାହରଣ ଦେଇ ଲେଖକ ଜିହାଦ୍ କଥାଟିର ପ୍ରାଞ୍ଜଳ ବ୍ୟାଖ୍ୟା କରିଛନ୍ତି । ଲୋକଙ୍କୁ ଧର୍ମାନ୍ତରିତ କରିବାପାଇଁ ବଳପ୍ରୟୋଗ, ବାଧ୍ୟବାଧକତାକୁ ସେ ଗ୍ରହଣ କରିନାହାନ୍ତି । ତାଙ୍କ ମତରେ- 'ବର୍ତ୍ତମାନ ଆମେରିକା ଓ ୟୁରୋପରେ ସର୍ବାଧିକ ପ୍ରସାରିତ ଧର୍ମ ଇସଲାମ । ସେଠାର ଲୋକଙ୍କୁ ତରବାରୀ ବା ବନ୍ଧୁକ ମୁନରେ କିଏ ମୁସଲମାନ କରୁଛି !'

ପୁସ୍ତିକାରେ ବିଭିନ୍ନ ଉପାଦେୟ କଥା ବୋଲାଯାଇଥିବାରୁ ଏହା ଉଭୟ ହିନ୍ଦୁ ଓ ମୁସଲମାନଙ୍କ ପାଇଁ ଅବଶ୍ୟ ପାଠ୍ୟ । ସରଳ ଭାଷା, ସାବଲୀଳ ଶୈଳୀରେ ଲେଖାଯାଇଥିବାରୁ ଏହା ସମସ୍ତଙ୍କର ଆଦରଣୀୟ ହୋଇପାରିବ । ଏଭଳି ଏକ ପୁସ୍ତିକା ରଚନା କରିଥିବାରୁ ମୁଁ ଶକୀଲ ଅହମଦ ସାହେବଙ୍କୁ ସାଧୁବାଦ ଜଣାଉଛି ଏବଂ ଏହାର ବହୁଳ ପ୍ରସାର କାମନା କରୁଛି ।

କୃଷ୍ଣଚରଣ ବେହେରା

(କୃଷ୍ଣଚରଣ ବେହେରା)

**ଡକ୍ଟର ହୁସେନ ରବିଗାନ୍ଧୀ, ପି.ଏଚ୍.ଡି.**

ପୂର୍ବତନ ସଭାପତି, ଓଡିଶା ସାହିତ୍ୟ ଏକାଡେମୀ

ସମ୍ପାଦକ, ଉତ୍କଳ ପ୍ରସଙ୍ଗ, ଭୁବନେଶ୍ୱର

ଶକୀଲ ଅହମଦଙ୍କ ଲିଖିତ 'ଜିହାଦ୍ ଓ ଆତଙ୍କବାଦ' ନାମକ ଦୀର୍ଘ ଲେଖାଟିର ପାଣ୍ଡୁଲିପି ପାଠକରି ମୁଁ ଚମକୃତ ହୋଇଛି । କାରଣ ବିଭିନ୍ନ ଧର୍ମରେ ଥିବା ଯୁଦ୍ଧ ସଂକ୍ରାନ୍ତୀୟ ଆଲେଖ ଏତେ ପ୍ରାଞ୍ଜଳ ଭାବରେ କେଉଁଠାରେ ଏକତ୍ର ଉଦ୍ଧୃତ କରାଯାଇ ଆଲୋଚନା କରାଯାଇଥିବା ମୋ ଦୃଷ୍ଟିକୁ ଆସିନାହିଁ । 'ଜିହାଦ୍ ଓ ଆତଙ୍କବାଦ' ନାମକ ପ୍ରବନ୍ଧ ଲେଖି ଶକୀଲ ବାବୁ ସମସାମୟିକ ସମୟର ଏକ ବହୁଳ ଆଲୋଚିତ ଓ ସମାଲୋଚିତ ଶୀର୍ଷକ ବିଷୟକୁ ମୌଳିକ ଭାବେ ଉପସ୍ଥାପନ କରି ଏ ସମ୍ପର୍କରେ ସାଧାରଣ ଲୋକଙ୍କ ଭିତରେ ଥିବା ଭୁଲ ବୁଝାମଣାକୁ ଦୂର କରିବାକୁ ଉଦ୍ୟମ କରି ଏକ ସତ୍‌କର୍ମ କରିଛନ୍ତି ।

ପ୍ରକୃତ ପକ୍ଷରେ ଧର୍ମ ନାମରେ ବା ଜାତୀୟତା ନାମରେ ନିର୍ଦ୍ଦୋଷ ଜନଗଣଙ୍କୁ ଅତର୍କିତ ଭାବରେ, ଗୁପ୍ତରେ ବା ବିନା କାରଣରେ ହତ୍ୟା କରିବା କୌଣସି ଧର୍ମରେ ଅନୁମୋଦିତ ହୋଇନାହିଁ । ସବୁ ଧର୍ମ ପରି ଇସଲାମ ଧର୍ମ ମଧ୍ୟ ପ୍ରଚାର ବା ପ୍ରସାର ପାଇଁ ବଳପ୍ରୟୋଗକୁ ଅନୁମତି ଦେଇନାହିଁ । ଶକୀଲ୍ ବାବୁ ପବିତ୍ର କୁରଆନ ଓ ହଦିସ୍‌ରୁ ଉଦ୍ଧୃତି ଦେଇ ଏହା ସ୍ପଷ୍ଟ କରି ଦେଇଛନ୍ତି । ପବିତ୍ର କୁରଆନରେ ଈଶ୍ୱର ଘୋଷଣା କରୁଛନ୍ତି-

> 'ଯଦି କେହି ଏଭଳି ବ୍ୟକ୍ତିର ପ୍ରାଣ ନିଏ ଯିଏ କାହାରି ହତ୍ୟା କରିନାହିଁ କିମ୍ବା ଧରାପୃଷ୍ଠରେ ବିଶୃଙ୍ଖଳା ସୃଷ୍ଟି କରିନାହିଁ, ତେବେ ସେ ସମଗ୍ର ମାନବଜାତିକୁ ହତ୍ୟା କଲା ଏବଂ ଯିଏ କାହାରି ଜୀବନ ରକ୍ଷା କଲା, ସେ ସମଗ୍ର ମାନବଜାତିକୁ ରକ୍ଷା କଲା । (କୁରଆନ ୫/୩୨)

ଏପରି ଈଶ୍ୱରୀୟ ଘୋଷଣାକୁ ଉଲଘଂନ କରି ଯିଏ ଅଯଥା ହିଂସା ଓ ରକ୍ତପାତ ତଥା ହତ୍ୟା-ବିଭୀଷିକାର ମାର୍ଗ ଆପଣାଇଥାଏ, ତାକୁ କେହି ମୁସଲମାନ ବୋଲି କହିପାରିବ କି ? ଜିହାଦ ବା ସଂଘର୍ଷ ପାଇଁ କେତେଗୁଡିଏ ସର୍ତ୍ତ ରହିଛି ଏବଂ ଶକୀଲ ବାବୁ ନିଜ ରଚନାରେ ଏହି ସର୍ତ୍ତ ତଥା ନିୟମାବଳୀର ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କରିଛନ୍ତି । ତେଣୁ, ଇସଲାମ ଧର୍ମ ନାମରେ ଯେଉଁ ଉଦ୍‌ଭ୍ରାନ୍ତମାନେ

ବିଭିନ୍ନ ସ୍ଥାନରେ ଅବିଚାରିତ ଭାବେ ହିଂସାକାଣ୍ଡ ଘଟାଇ ଚାଲିଛନ୍ତି, ତାହା ଆଦୌ ଜିହାଦ୍ ହୋଇନପାରେ। ସର୍ବଶ୍ରେଷ୍ଠ ଜିହାଦ୍ ହେଉଛି ନିଜ ଇନ୍ଦ୍ରିୟର କୁମତିଗତିକୁ ନିୟନ୍ତ୍ରଣରେ ରଖିବା, ଅତ୍ୟାଚାରୀ ଶାସକ ନିକଟରେ ସାହସର ସହିତ ନ୍ୟାୟର କଥା କହିବା ବା ତା' ଅନ୍ୟାୟ-ଅତ୍ୟାଚାରରକୁ ପ୍ରତିବାଦ କରିବା । ଅସ୍ତ୍ରଧାରଣ କରି ଧାର୍ମିକ ପ୍ରତିବାଦ କରିବାକୁ ସାଧାରଣ ନାଗରିକକୁ ଅଧିକାର ଦିଆଯାଇନାହିଁ । ପବିତ୍ର କୁରଆନ୍‌ରେ କୁହାଯାଇଛି-

> 'ଯେଉଁମାନେ ଧର୍ମ ସମ୍ପର୍କରେ ତୁମ ସହ ଯୁଦ୍ଧ କରିନାହାନ୍ତି ବା ତୁମମାନଙ୍କୁ ତୁମ ଘରୁ ବାହାର କରିନାହାନ୍ତି, ସେମାନଙ୍କର କଲ୍ୟାଣ କରିବାକୁ ବା ସେମାନଙ୍କ ସହ ଉତ୍ତମ ବ୍ୟବହାର କରିବାକୁ ଅଲ୍ଲାହ ତୁମକୁ ବାରଣ କରୁନାହାନ୍ତି । ଅଲ୍ଲାହ ତ ନ୍ୟାୟପରାୟଣ ଲୋକଙ୍କୁ ନିଜ ସଖା ମନେକରନ୍ତି । ଅଲ୍ଲାହ ତୁମମାନଙ୍କୁ କେବଳ ସେଇମାନଙ୍କ ସହ ବନ୍ଧୁତା କରିବାପାଇଁ ବାରଣ କରୁଛନ୍ତି ଯେଉଁମାନେ ତୁମ ସହିତ ଧର୍ମ ବିଷୟରେ ଯୁଦ୍ଧ କଲେ ଏବଂ ତୁମକୁ ତୁମ ଘରୁ ବାହାର କରିଦେଲେ ଏବଂ ବାହାର କରିବାରେ ସାହାଯ୍ୟ କଲେ ।'
>
> (କୁରଆନ ୬୦/୮)

ଏଥିରୁ ସ୍ପଷ୍ଟ ହୋଇଯାଉଛି ଯେ ଭାରତ ପରି ଧର୍ମନିରପେକ୍ଷ ଦେଶମାନଙ୍କରେ ଯେଉଁଠି ସମ୍ପୂର୍ଣ୍ଣ ଧାର୍ମିକ ସହାବସ୍ଥାନ ଓ ସବୁଧର୍ମ ପାଳନ ପାଇଁ ସ୍ୱାଧୀନତା ଅଛି, ସେଠାରେ ଆତଙ୍କବାଦୀ କାର୍ଯ୍ୟକଳାପ ପୂରାପୂରି ଇସଲାମ ଧର୍ମ ବରୋଧୀ କାର୍ଯ୍ୟ ଏବଂ ଏହି କାର୍ଯ୍ୟରେ ଲିପ୍ତ ଥିବା ବ୍ୟକ୍ତିମାନେ ନିଶ୍ଚିତଭାବେ ଅପରାଧୀ । ସେମାନଙ୍କ ପ୍ରତି ମୃତ୍ୟୁଦଣ୍ଡ ମଧ୍ୟ କମ୍ ଅଟେ । ଶକୀଲ ଅହମଦଙ୍କର ଏହି ପ୍ରବନ୍ଧ ଆମ ସମାଜର ବୁଦ୍ଧିଜୀବୀବର୍ଗଙ୍କ ମଧ୍ୟରେ ଜିହାଦ୍ ପ୍ରତି ଥିବା ବହୁ ଭୁଲ ବୁଝାମଣାକୁ ଦୂର କରିବାରେ ଯେ ସମର୍ଥ ହେବ, ଏହା ନିଶ୍ଚିତ ଭାବରେ କୁହାଯାଇପାରେ। ପୂର୍ବପରି ଭବିଷ୍ୟତରେ ମଧ୍ୟ ଶକୀଲ ବାବୁଙ୍କଠାରୁ ଇସଲାମ ଧର୍ମ ସମ୍ପର୍କୀୟ ଲେଖାମାନ ଓଡିଆ ଭାଷାରେ ପାଠକ ଅପେକ୍ଷା କରନ୍ତି । ସେ ଏହି ଆକାଂକ୍ଷାକୁ ପୂରଣ କରିବା ପାଇଁ ଯତ୍ନବାନ ହେବେ ବୋଲି ମୋର ପୂର୍ଣ୍ଣ ଆଶା ରହିଛି।

(ହୁସେନ ରବି ଗାନ୍ଧୀ)

**Dr. B.B.Panda**
M.Sc, LL.B, PHD, IPS (R)
Former Director General of Police, Odisha

I have very carefully gone through the book **'Jihad O Atankabad'** written by Mr. Shakeel Ahmed. Mr. Shakeel Ahmed is a known scholar of Islam and he has written a number of books on different aspects of Islam, which have become very popular.

Islam is a religion of peace. Islam is a religion of brotherhood. Islam never sanctions violence, particularly killing of innocent people, women and children in the name of religion. The holy Quran teaches that the path leading to God consists of kindness, righteousness, patience, forgiveness and moderation. Prophet Muhammad taught his followers to give high status to women. He taught that paradise lies beneath the feet of mothers. Prophet Muhammad taught 'the best of Islam is to feed the hungry and spread peace amongst those you know and those you do not know.' Therefore, where is the question of violence and killing of innocent people, women and children in the name of religion, in a religion which advocates peace and peace only. Some misguided people, without understanding the true import of the word 'JIHAD', are creating violence in many parts of the world. In the process they are exploding bombs in public places, inside buses, trains and last but not the least, inside mosques and are killing innocent people. Killing in the name of Jihad has become a routined day-to-day affair in Pakistan and Afganistan.

In the Quran, Jihad has been explained at several places. One explanation which appealed me and which will

appeal to all true human beings is that the purpose of Jihad is to fight against all the evils that exist deep inside the man, i.e. jealousy, hatred, ill-will, coveting the wealth of others and particularly one's ego, which is the greatest enemy of man. Such type of Jihad must be fought by every human being and a true Muslim fights only such Jihad. But the true import of Jihad has been grossly misunderstood by the so-called Jihadis, who are killing people day in and day out in the name of Islam. Such mindless killing is strongly forbidden by Islam.

I congratulate Mr. Shakeel Ahmed for writing such a book at this critical juncture of human civilization when the religion of peace and brotherhood is being misunderstood as the religion which sanctions violence. I hope and believe, this small but useful book will go a long way in explaining the true import of the word 'Jihad' to the people of Odisha irrespective of their religion and will go a long way in removing the misconceptions about the word 'Jihad'. It will be better if the book is translated into English so that it will have a wider circulation and desired effect.

I wish the efforts of Mr. Shakeel Ahmed all success.

B.B. Panda

(B.B. Panda)

**ଅରୁଣ କୁମାର ଉପାଧ୍ୟାୟ, ଆଇ.ପି.ଏସ.**
ପୂର୍ବତନ ଆଇ.ଜି. ପୋଲିସ, ଓଡିଶା
ଲେଖକ-'ସିଦ୍ଧାନ୍ତ ଦର୍ପଣର ଗାଣିତିକ ବ୍ୟାଖ୍ୟା',
'ବେଦ ଅନୁସାରେ ଜଗନ୍ନାଥ', 'ସାଂଖ୍ୟ ସିଦ୍ଧାନ୍ତ'

'ଜିହାଦ୍ ଓ ଆତଙ୍କବାଦ' ବିଷୟରେ ଶକୀଲ ଅହମଦଙ୍କ ଦ୍ୱାରା ଲେଖାଯାଇଥିବା ପୁସ୍ତକ ଆଜିର ଆବଶ୍ୟକତା ଏବଂ ଏହା ଏକ ସାହସିକ କାର୍ଯ୍ୟ । ବର୍ତ୍ତମାନ ସମୟରେ ଅନେକ ଗୋଷ୍ଠୀ ଇସଲାମ ବା ପବିତ୍ର କୁରଆନ ଅନୁସାରେ ନିଜର ଆତଙ୍କବାଦକୁ ଜିହାଦ୍ କହୁଛନ୍ତି । ଏଭଳି ପରିସ୍ଥିତିରେ ଜଣେ ମୁସଲିମ ଲେଖକଙ୍କ ଦ୍ୱାରା ଏହାର ବିରୋଧ ମହତ୍ୱପୂର୍ଣ୍ଣ । ଧର୍ମଗ୍ରନ୍ଥମାନଙ୍କର ବ୍ୟାଖ୍ୟା ସହିତ ସେ ଭାରତରେ ଇସଲାମୀ ଶାସନ ସମ୍ପର୍କରେ ଓଡିଶାର ପୂର୍ବତନ ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭରନାଥ ପାଣ୍ଡେଙ୍କ ପୁସ୍ତକରୁ ଉଦାହରଣ ମଧ୍ୟ ଦେଇଛନ୍ତି ।

କୌଣସି ରାଜା ବା ବ୍ୟକ୍ତିର ଅତ୍ୟାଚାରର ଅର୍ଥ ନୁହେଁ ଯେ ଏହା ତା' ଧର୍ମଶାସ୍ତ୍ରର ଆଦେଶ । ରାମ ଓ ରାବଣ ଉଭୟେ ଏକା ବେଦ ପଢୁଥିଲେ, କିନ୍ତୁ ରାବଣର ଧର୍ମବିରୋଧୀ କାର୍ଯ୍ୟକୁ ରାମଚନ୍ଦ୍ର ବିରୋଧ କରି ଏହି ପରାକ୍ରମଶାଳୀ ରାଜାକୁ ପରାଜିତ କଲେ । ମହାଭାରତ ଯୁଦ୍ଧ ମଧ୍ୟ ଧର୍ମ ଓ ଅଧର୍ମ ଭିତରେ ସଂଘର୍ଷ ଥିଲା । ଧର୍ମଶାସ୍ତ୍ର ବିଷୟରେ ବିବାଦ ନ ଥିଲା ।

ଧର୍ମ ଅର୍ଥ ଯାହା ପ୍ରଜାଙ୍କୁ ଧାରଣ କରେ, ଅର୍ଥାତ୍ ଯାହାଦ୍ୱାରା ସମାଜର କାର୍ଯ୍ୟ ଓ ବ୍ୟବସ୍ଥା ଶୃଙ୍ଖଳିତ ଭାବରେ ଚାଲିବ । 'ଧାରଣାତ୍ ଧର୍ମ-ମିତ୍ୟାହୁଃ ଧର୍ମୋ ଧାରୟତେ ପ୍ରଜାଃ। ଯଶ୍ଚ ଧାରଣ ସଂଯୁକ୍ତ ସ ଧର୍ମଂ ଇତି ନିଶ୍ଚୟଃ ।'(ମହାଭାରତ, ଶାନ୍ତିପର୍ବ, ୧୦୯-୧୧) ବୈଦିକ ଦର୍ଶନର ପରିଭାଷା ଅନୁସାରେ— 'ଯତୋଽଭୁଦୟ-ନିଃଶ୍ରେୟସ-ସିଦ୍ଧିଃ ସ ଧର୍ମଃ' । ଅର୍ଥାତ୍ ଯାହାଦ୍ୱାରା ଆମର ଉନ୍ନତି ଓ କଲ୍ୟାଣ ହେବ, ତାହା ହିଁ ଧର୍ମ । ମନୁସ୍ମୃତିର ଅଷ୍ଟମ ଅଧ୍ୟାୟରେ ସମାଜର ପାଳନ ପାଇଁ ରାଜାର ମୁଖ୍ୟ କର୍ତ୍ତବ୍ୟ ଧର୍ମପାଳନ ବୋଲି କୁହାଯାଇଛି । ଯେଉଁ ସମାଜ ଭୟମୁକ୍ତ, ତାକୁ ହିଁ ସଭ୍ୟ ବା ଆର୍ଯ୍ୟ କୁହନ୍ତି। ଅନ୍ୟଥା ଆତଙ୍କ ରହିଲେ ତାହା ମ୍ଳେଚ୍ଛ ସମାଜ। 'କୃଷ୍ଣସାରସ୍ତୁ ଚରତି ମୃଗୋ ଯତ୍ର ସ୍ୱଭାବତଃ, ସ ଜ୍ଞେୟୋ

ଯଜ୍ଞିୟୋ ଦେଶୋ ମ୍ଲେଚ୍ଛ ଦେଶସ୍ତତଃ ପରଃ' (ମନୁସ୍ମୃତି ୨/୨୩) । ଯେଉଁ ଦେଶରେ କୃଷ୍ଣମୃଗ ନିର୍ଭୟରେ ବୁଲିପାରେ, ତାହା ଧାର୍ମିକ (ଯଜ୍ଞଯୁକ୍ତ), ଅବଶିଷ୍ଟ ମ୍ଲେଚ୍ଛ ଦେଶ । ସମାଜ ବା ବ୍ୟକ୍ତିର ଉପଯୋଗୀ ଉତ୍ପାଦନକୁ ଯଜ୍ଞ କହନ୍ତି (ଗୀତା ୩/୧୦) । ଏପରି ବ୍ୟବସ୍ଥା ଆତଙ୍କମୁକ୍ତ ସମାଜରେ ହିଁ ଚାଲିପାରିବ । କୌଣସି ପ୍ରକାର ଆତଙ୍କ ଧର୍ମର ଅଙ୍ଗ ହୋଇ ନପାରେ । ଗ୍ରନ୍ଥ ବ୍ୟତୀତ ଏହାର ପ୍ରମାଣ ହେଉଛି ଯେ ଇସଲାମ ଦ୍ୱାରା ୧୪୦୦ ବର୍ଷଠାରୁ ଆରବରେ ସ୍ଥାୟୀ ସମାଜ ବ୍ୟବସ୍ଥା ଚାଲିଛି । ଯଜ୍ଞ ବା ନିଜ ପରିଶ୍ରମ ଦ୍ୱାରା ଉତ୍ପାଦନ ନହେଲେ, ଲୋକେ ବା ଦେଶ ଅନ୍ୟ ଉପରେ ଆକ୍ରମଣ କରନ୍ତି । ଏହାହିଁ ପଶ୍ଚିମ ଏସିଆର କେତେକ ଯାଯାବର ଜାତିଙ୍କ ଦ୍ୱାରା ହେଲା । ସେମାନେ ଧନସମ୍ପତ୍ତି ଲୁଟିବା ପାଇଁ ଭାରତ ଉପରେ ଆକ୍ରମଣ କଲେ । ସେମାନଙ୍କର ନିଜର ସ୍ଥାୟୀ ଜୀବିକା ବ୍ୟବସ୍ଥା ନଥିବା କାରଣରୁ ପ୍ରାଣ ଭୟ ଛାଡ଼ି ଲଢ଼ିଲେ । କିନ୍ତୁ ଏହା ଲାଭପ୍ରଦ ହେଲାନାହିଁ । ସବୁଠାରୁ ଅଧିକ ଲୁଟ ଆଫଗାନିସ୍ତାନ ଦ୍ୱାରା ହେଲା । କିନ୍ତୁ ସେହି ଦେଶ ସବୁଠାରୁ ଅଧିକ ଗରିବ । ଏହା ଦେଶ ଓ ସମାଜର ପରିସ୍ଥିତି ଅନୁସାରେ ହୁଏ । ତା' ପାଇଁ ଧର୍ମଗ୍ରନ୍ଥକୁ ଦୋଷ ଦେବା ବା ତା'ର ଭୁଲ ବ୍ୟାଖ୍ୟା କରିବା ଉଚିତ ନୁହେଁ ।

ଅରୁଣ କୁମାର ଉପାଧ୍ୟାୟ

(ଅରୁଣ କୁମାର ଉପାଧ୍ୟାୟ)

**Md. Ziauddin Ahmed, IPS**
Retired DIG of Police, Cuttack

Islam is an Arabic word which connotes submission and obedience. As a religion, Islam stands for complete submission and obedience to Allah, the Lord of the Universe. Another literal meaning of the word Islam is 'Peace' and this signifies that one can achieve real peace of body and mind through submission and obedience to Allah. Such a life of obedience brings with it peace of heart and establishes real peace in the society at large. Islam, in fact, is an attributive title. Anyone who possesses this attribute whatever race, community, country or group he belongs to, is a Muslim. According to the Qur'an, among every people and in all ages, there have been good and righteous people who possessed this attribute and all of them were and are Muslims.

Everything in the universe is Muslim for it obeys God by submission to His laws. As the whole of creation obeys the law of God, the whole universe, therefore, literally follows the religion of Islam, for Islam signifies nothing but obedience and submission to Allah, the Lord of the Universe. Islamic teaching is not merely a body of metaphysical doctrine nor merely a set of rituals of individual conduct. It is indeed a way of life, the base of which lies rooted in Divine Revelation, a way of life which is permeated with God consciousness and is oriented to doing God's will and actualizing good and righteousness in human life.

In view of the above facts, terrorism has no place in Islam. It is an anti-Islamic act. It does not in any way favour the Muslims of the world. We, the true Muslims vehemently condemn such antisocial acts. We Muslims accept the principle of the "Citizen of the World" The concept of 'Jihad'

is misrepresented through the 'Terrorism' It is a war against humanity which should be condemned by one and all.

'Jihad and Terrorism' authored by Mr. Shakeel Ahmed is a noble piece of document which carries a valuable message for the whole humanity of the world in defining the distinction between Jihad and Terrorism. I congratulate Mr. Shakeel Ahmed for his immense effort in producing this book which will carry many valuable contribution in the field of recent development of Terrorism.

Md. Ziauddin Ahmed

(Md. Ziauddin Ahmed)

**Dr M.Q. Khan, D.Litt.**
Former Vice Chancellor, Berhampur University
Emeritus Professor of English, Revenshaw University

In the twenty-first century, despite all the slogans of world peace and social harmony, the entire human society is torn apart with quarrels and conflicts. Among the various causes and reasons that have created gulf of differences and dissensions in the world, it is chiefly misunderstanding and misuse of concepts, ideologies and practices particularly relating to major religions of the world which are responsible for such conflicts.

These wrong concepts not only create sharp division among people but also give rise to various situations, which generate the passion of hatred and enmity in the society. For example, in the recent past there has been a hue and cry regarding the concept of Jihad in Islam. Some people have spread the idea that the followers of Islam create all kinds of violence and terrorism in the society because they believe in the ideology of Jihad which ordains them to take recourse to all kinds of terrorism for the sake of religion.

Nothing is farther from truth than this. In Islam, Jihad never means creating violence, killing or taking recourse to terrorism. It is a term that has a wide connotation and has several meanings that aim at building a man of integral character whose chief purpose is to purify his self and thereafter save the society from all kinds of violence or subversive activities. It has never meant to wage war or create violence by all kinds of subversive activities.

Mr. Shakeel Ahmed in his book JIHAD O ATANKABAD, makes the right kind of attempt to give a correct meaning, concept and practice of Jihad in Islam and

how the term has been misused and grossly misunderstood by most of the people. The book not only gives an insight into the spirit and practice of this term in Islam, but also clears a good deal of doubt and wrong idea about Islam.

While congratulating Mr. Shakeel Ahmed for his attempt at writing such an important treatise on the subject, I hope and wish that this brief but significant book will be most useful and necessary for those who need to know and understand a major religion of the world with a correct and meaningful perspective.

(M.Q. Khan)

**Prof. Sayed Manzoor Ahmed Quasmi**
M.A.,Pol.Sc., M.A.Urdu, (AMU), O.E.S (Retd)
Former HOD, Urdu & Persian, Revenshaw College
Former Secretary, Odisha Urdu Academy
Former Special Officer, Governor of Odisha

Fortunately I had the opportunity to go through the booklet written by Mr. Shakeel Ahmed titled 'Jihad O Atankabad'. These days it has become a trend to malign Islam with terrorism, but every learned person knows that Islam is a religion of peace, fraternity and brotherhood. Islam believes in universal brotherhood. It strongly indoctrinates that society should be based on high human values. Humanity is the fundamental point for a healthy society. One who goes through the history of Islam and life of Prophet Muhammad (PBOH), can very easily find out these human values which the Prophet preached throughout his life.

Some people misinterpreted the term 'Jihad' and propagated a wrong concept. Jihad is not to fight against any religion, but to fight against the vices prevailing in the society. Jihad is fighting against all socio-cultural and economic evils and against gross inequality in every field of society. It is to fight against one's own whims, caprices, ego and lust etc. which always dominate over an individual. The concept of universal brotherhood should be practised irrespective of caste, creed, colour and religion. Mr. Shakeel Ahmed has rightly pointed out the true meaning of Jihad. I hope this booklet shall be fondly read and appreciated by each and everyone. I heartily congratulate Mr. Shakeel Ahmed for such an endeavour and expect that he should continue such efforts in future for the benefit of the entire humanity.

(S.M.A. Quasmi)

Mufti Abdur Rahman Nadvi
Nazim, Madrasa Islamia Noorul Uloom
Nzim, Jamia Aisha Lil-Banat,
CEO, Iqra Research Academy, Cuttack
Ph:0671-2423399, Cell-9861390837



مفتی عبدالرحمن ندوی
ناظم مدرسہ اسلامیہ نورالعلوم، نیموساہی
ناظم مدرسہ جامیعہ عایشہ للبنات، درگاہ بازار
سی۔ای۔او، اقراءریسرچ اکاڈمی، کٹک

اسلام انسانیت کا مذہب ہے۔ اسلامی تعلیمات کی روشنی میں یہ بات کہی جاسکتی ہے کہ جہاد مقدس عبادت ہے اور دہشت گردی عظیم جرم ہے۔ جہاد زندگی ہے۔ دہشت گردی موت ہے۔ جہاد انسانیت کی بقا کا نام ہے اور دہشت گردی انسانیت کی فنا کا نام ہے۔ جہاد قرب الٰہی کا ذریعہ ہے۔ دہشت گردی خدا سے دوری کا نتیجہ ہے۔ مجاہد کا ٹھکانہ جنت ہے۔ دہشت گردی کا ٹھکانہ دوزخ ہے۔ جہاد ہر مذہب کی کتابوں میں ایک عمدہ عمل ہے۔ دہشت گردی ایک قبیح فعل ہے۔ اس سلسلے میں اسلامی تعلیمات اس قدر واضح اور قطعی ہیں کہ ان کی روشنی میں بلا خوفِ تردید دعویٰ کیا جاسکتا ہے کہ آج اگر دنیا کے پاس امن وسلامتی اور صلح وآشتی کا کوئی جامع بامقصد اور ہمہ گیر تصور موجود ہے تو وہ فقط اسلام کا عطیہ ہے۔ اسلام نے ایک بےقصور انسان کے قتل کو پوری انسانیت کا قتل قرار دیا ہے۔ اسلام نے مسلمانوں کو ہدایت دی کہ اگر دیگر قوموں کی جانب سے تمھارے جان ومال اور امن وامان کے لئے کوئی خطرہ نہ ہو تو ان کے ساتھ رواداری اور حسن سلوک کا معاملہ کرو۔ اسلام نے عہد کی پابندی کو لازم قرار دیا ہے۔ اسلام نے صلح کو بہتر قرار دیا ہے۔ اسلام نے تمام انسانوں کی برابری کا اعلان کیا۔ اسلام نے بدلہ لینے میں بھی برابری کی تلقین کی۔ زیادتی کی اجازت نہیں دی ہے۔ اسلام نے دوستی اور دشمنی میں عدل وانصاف پر کاربند رہنے کی تلقین کی۔ اسلام نے تمام انسانوں کے ساتھ رحمت وشفقت کی تعلیم دی۔ اسلام نے تمام مخلوق کو اللہ کا کنبہ قرار دیا۔ اسلام کسی بھی حال میں فتنہ فساد کی اجازت نہیں دیتا۔ اس لئے دہشت گردی کی کسی بھی صورت کا تعلق اسلام سے نہیں ہے۔ لیکن ابھی کچھ دنوں سے چند افراد جو اسلامی تعلیمات خاص طور سے جہاد جیسے مقدس لفظ کی حقیقت سے ناآشنا ہونے کی بنا پر یا فطری کجروی وکج فہمی اور مذہب اسلام سے دلی دشمنی کی بنیاد پر جہاد کا نام دہشت گردی دے کر دنیا کے بھولے بھالے انسانوں کے سامنے اسلام کا غلط تعارف کرانا چاہتے ہیں کہ مذہب اسلام ظلم وجور، جبر واستبداد، قتل وغارت گری، فتنہ وفساد کی تعلیم دیتا ہے۔ حالانکہ یہ بات اسلامی تعلیمات کے سراسر خلاف ہے۔

اسی حقیقت کو واضح کرنے کے لئے اور اسلامی تعلیمات کا بالخصوص جہاد کے سلسلے میں جو غلط فہمی پھیلائی جا رہی ہے اس پر سے پردہ اٹھانے کے لئے بھائی شکیل احمد نے بروقت و برمحل اس خاص موضوع پر اڈیا زبان میں قلم اٹھا کر برادرانِ وطن کو اسلام کی صحیح تصویر پیش کرنے کی کوشش کی ہے۔اس کتاب کو لکھ کر شکیل احمد پورے ملت کے شکریہ کے مستحق ہیں۔

الحمدللہ اس سے پہلے بھی بھائی شکیل احمد اڈیا زبان میں اسلامی تعلیمات سے متعلق چند اہم کتابیں علماء کرام کی نگرانی میں لکھ چکے ہیں جو عنداللہ وعندالناس مقبول ہو چکی ہیں۔اللھم زد فزد۔ پھر اللہ کی توفیق سے ''جہاد و آتنک واد'' نامی کتاب علماء کی مشاورتی کمیٹی کی نگرانی میں تحریر کی ہے۔اللہ ان کی محنت کو فلاح دارین کا ذریعہ بنائے۔اقراء ریسرچ اکاڈمی نے اس کتاب کی طباعت کا فیصلہ کر لیا ہے۔انشاء اللہ چند دنوں میں آپ کے ہاتھوں میں نئے سال کے موقع پر نیا تحفہ ملے گا۔رب ذوالجلال اس ادارہ کو شرف قبولیت سے نوازے۔آمین

والسلام

مفتی عبدالرحمن ندوی

(مفتی عبدالرحمٰن ندوی)
خادم اقراء ریسرچ اکیڈمی

صوبہ اڑیسہ کی ۶۹ سالہ عظیم وقدیم دینی، تعلیمی تبلیغی اور مرکزی درسگاہ

MOBILE - 9437014713
9437228680

CODE - 0671 PHONE- 2350406

الجامعۃ الاسلامیہ
مرکز العلوم سونگڑہ
ڈاکخانہ کوڈ، ضلع کٹک
صوبہ اڑیسہ۔ ۷۵۴۲۲۱

JAMIA ISLAMIA
MARKAZUL-ULOOM, SUNGRA

PO: KOOD, DIST: CUTTACK
ORISSA ( INDIA), PIN-754221.

**مفتی سید نقیب الامین برقی قاسمی**

جہاد اور دہشت گردی یہ دونوں آپس میں بالکل متضاد معنی رکھتے ہیں۔ دونوں کی مراد، منشاء، مفہوم اور مطلب بالکل جداگانہ ہیں۔ جہاد کا مطلب ظلم وزیادتی کرنا نہیں بلکہ اس کے خلاف برسرپیکار ہونا ہے۔ جہاد سے مراد تلوار اٹھانا نہیں بلکہ ظالم کے ہاتھ سے تلوار گرانے کی سعی کرنا ہے۔ جہاد کا منشاء ظلم وبربریت کا خاتمہ ہے جب کہ دہشت گردی ظلم وبربریت برپا کرنے کا نام ہے۔ مگر افسوس چند سالوں سے کچھ اسلام اور احکام اسلام سے ناواقف، نادان یا بتکلف نادان بننے کا ڈھونگ رچانے والوں نے ان دونوں لفظوں کو ایک ہی ''دہشت گردی'' کا عنوان دے کر جہاد جیسی مقدس عبادت (جس کی بجا آوری سے معاشرہ میں اصلاح کا امکان ہی نہیں بلکہ یقین ہے) کو سوسائٹی میں زہر گھولنے والا عنصر ثابت کرنے کی ایک ناپاک اور ناکام کوشش شروع کی ہے۔ جس کے پیچھے صرف اسلام اور مسلمانوں کے ساتھ بغض وعناد اور حسد وجلن اور انہیں بدنام کرنے کی شازش کے سوا دوسری کوئی اور چیز کارفرما نہیں ہے۔

اللہ تعالیٰ خوب خوب جزائے خیر عطا فرمائے میرے انتہائی عزیز محترم جناب شکیل بھائی صاحب کو جن کی کئی کتابیں اس سے قبل بھی منظر عام پر آکر مقبول خاص وعام ہوچکی ہیں۔ انہوں نے ابھی تازہ ترین ''**جہاد اور آتنک واد**'' کے عنوان سے ایک بہت ہی جامع کتابچہ انتہائی جانفشانی، محنت اور کاوش کے بعد تحریر کیا ہے، جس میں انہوں نے جہاد پر ہر زاوئے بحث وتحقیق کرکے جہاد کی اہمیت، افادیت اور ضرورت کو بہت ہی حسن وخوبی سے ثابت کیا ہے اور اس سلسلے میں پیدا ہونے والی غلط فہمیوں کا ازالہ بھی کیا ہے۔ دعا ہے کہ اللہ تعالیٰ انہیں صحت، عافیت، جرأت وحوصلہ عطا فرمائے اور ان کی خدمات کو شرف قبولیت سے نوازے۔ میں ان دنوں جامعہ مرکز العلوم کے سالانہ اجلاس (جس میں دارالعلوم دیوبند کے مہتمم حضرت مولانا مفتی ابوالقاسم صاحب بنارسی مدظلہ تشریف لارہے ہیں) کی تیاریوں میں مصروف ہونے کی وجہ سے اپنے اندر کے وہ تأثرات جو اس کتابچہ کے سلسلے میں پائے جاتے ہیں مکمل تحریر نہیں کر پایا ہوں ورنہ متذکرہ بالا تأثرات سے کہیں زیادہ تأثرات اس سلسلے میں میرے سینے میں موجزن ہیں۔ والسلام

سید نقیب الامین برقی قاسمی غفرلہ

(مولانا مفتی وقاری سید نقیب الامین برقی قاسمی)
مہتمم جامعہ مرکز العلوم سونگڑہ وجنرل سکریٹری جمیعۃ علماء اڑیسہ
خطیب مدنی مرکز المساجد وامام عیدین مرکزی عیدگاہ اڈیشہ سونگڑہ

**Zayeemul Islam Qasmi**
Mudaris Jamia Markazul Uloom, Sungra
Office Secretary, Jamiat Ulama-e-Odisha
Joint Secretry,
Tahaffuz-i-Khatm-i-Nabuwat, Odisha
Jairampur, PO-Kood, Cuttack, Cell-9437671539



زعیم السلام قاسمی
مدرس جامعہ مرکز العلوم، سونگڑہ
افس سکریٹری، جمیعتہ علماء اڈیسہ
نائب ناظم تحفظ ختم نبوت، اڈیشہ

آتنک واد، دہشت گردی اور Terrorism یہ سب ایسے پراسرار اصطلاحات (Terminlogy) ہیں جن کی حقیقت کا آج تک کسی کو اندازہ نہیں لگ سکا۔ پچھلے بیس پچیس سالوں سے بڑے بڑے اسکالرس قد آور محققین نے اس معمہ کے حل کے لیے اپنے تمام تر افکار وخیالات اور توانائیاں صرف کیں مگر اس مسئلے کا کوئی حل ان کے ہاتھ نہ لگ سکا۔ حل تو کجا صرف دہشت گردی کی کسی ایک تعریف پر بھی وہ اتفاق نہ کر سکے۔ اس کے برخلاف جہاد کہ جس کی لغوی اور اصطلاحی دونوں تعریفیں مسلم اور متفق علیہ ہیں، جنہیں جاننے اور سمجھنے کے بعد کوئی بھی باشعور عقلمند اور تعلیم یافتہ انسان اس مقدس عبادت کے ساتھ دہشت گردی کو ہرگز جوڑ نہیں سکتا اس لیے کہ جہاد اور دہشت گردی کے مابین کسی بھی طرح سے جوڑ یا مناسبت نہیں ہے، (جس کا آپ کو اس کتاب کے مطالعہ سے بخوبی اندازہ ہو جائے گا) کیونکہ دہشت گردی ظلم وستم اور تعدی کا نام ہے، منافرت و بربریت پھیلانے کا نام آتنک واد ہے جب کہ جہاد اور ظلم وجور سے نجات پانے اور ظالم کے پنجے کو تھام لینے کی سعی اور کوشش کو کہتے ہیں، جو کسی بھی طرح قابل اعتراض نہیں ہے۔ قرآن کریم نے ایسے ہی موقعوں پر جہاد کی اجازت دی ہے چنانچہ ارشاد ہے: اذن للذین یقاتلون بانھم ظلموا (مارے جانے والے لوگوں کو ظالمین کے خلاف جہاد کرنے کی اجازت دی گئی ہے ان پر ظلم ہونے کی وجہ سے)۔ یہ صحیح ہے کہ اہنسا اور عدم تشدد بہت ہی اچھی چیز ہے مگر یہ بھی سچ ہے کہ یہ فلسفہ ہر جگہ کارگر نہیں ہو سکتا ورنہ تو غلامی میں سے نجات کی جدوجہد، ملک کی آزادی، سرحدوں کی حفاظت، لوگوں کا تحفظ اور کسی بھی ممکنہ خطرے کے پیش نظر دفاعی اقدام کرنا بھی دہشت گردی میں شمار ہونے لگے گا جسے دنیا کبھی بھی تسلیم نہیں کر سکتی۔

انہیں تمام باتوں کا جائزہ انتہائی محققانہ انداز میں اڈیا زبان کے مشہور ادیب ومصنف جناب شکیل احمد صاحب نے جہاد وآتنک واد نامی کتابچے میں لیا ہے اور انتہائی خوش اسلوبی سے جہاد کو مثبت اور دہشت گردی کو منفی ثابت کیا ہے۔ جناب شکیل احمد صاحب نے اس سے قبل بھی اسلام اور احکام اسلام کی صحیح تصویر اور مناسب تعریف اپنی کئی تصانیف کے ذریعہ اڈیا زبان سے واقف لوگوں کے سامنے پیش کر کے خوب داد وتحسین حاصل کیا ہے۔ اللہ تعالیٰ موصوف کو خوب خوب جزائے خیر عطا فرمائے اور ان کی ان کوششوں کو قبولیت سے سرفراز فرمائے۔ دین اسلام سے محبت رکھنے والے اور دینی خدمات کا جذبہ رکھنے والے ہر مسلمان، مخیّر حضرات سے درخواست ہے کہ جناب شکیل احمد صاحب کا دامے، درمے، قدمے، سخنے تعاون فرما کر ان کی حوصلہ افزائی فرمائیں اور الدال علی الخیر کفا علیہ (خیر کے کاموں میں رہنمائی کرنے والا اس کام کے کرنے والے کے مانند ہے) کا مصداق اور تعاونوا علی البر والتقوی ولا تعاونو علی الاسم والعدوان (نیکی اور بھلائی کے کاموں میں ہاتھ بٹائیں اور گناہ وسرکشی کا ساتھ نہ دیں) کا عملی تفسیر بنیں۔

(مولانا زعیم السلام قاسمی)

# ଭୂମିକା

ଅସୀମ ଦୟାବାନ ଅନନ୍ତ କରୁଣାଶୀଳ ଅଲ୍ଲାହ୍‌ଙ୍କ ନାମରେ

ଇସଲାମକୁ ନେଇ ଅନେକ ଲୋକଙ୍କ ଆଖିରେ ପ୍ରଶ୍ନ। ଯଦି ମନ ବୁଝିଲା ଭଳି ଉତ୍ତର ନ ମିଳେ ତେବେ ସେଗୁଡିକ ମନ ଭିତରେ ଜମାଟ ବାନ୍ଧି ରହେ । ଏହି ସମସ୍ୟାର ସମାଧାନ ସାଂପ୍ରଦାୟିକ ବ୍ୟବଧାନକୁ ଅନେକାଂଶରେ କମ କରି ପାରନ୍ତା । ଓଡିଶାରେ ମୁସଲିମ ବିଦ୍ୱାନମାନଙ୍କର ଅଭାବ ନାହିଁ। ଅଭାବ ଅଛି ଓଡିଆ ଇସଲାମୀ ସାହିତ୍ୟର । ଏହି ଅଭାବକୁ କିଛି ପରିମାଣରେ ଦୂର କରିବା ଏବଂ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ସଂହତି ପ୍ରତିଷ୍ଠା କରିବା ମୋର ମୁଖ୍ୟ ଉଦ୍ଦେଶ୍ୟ ।

ସାଂପ୍ରତିକ ପରିସ୍ଥିତିରେ 'ଜିହାଦ୍ ଓ ଆତଙ୍କବାଦ' ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ବିଭିନ୍ନ ସ୍ଥାନରେ ହେଉଥିବା ଆତଙ୍କବାଦୀ କାର୍ଯ୍ୟକଳାପ ଜିହାଦ ସଂପର୍କରେ ବହୁ ଲୋକଙ୍କ ମନରେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ସେମାନଙ୍କ ସନ୍ଦେହମୋଚନ ପାଇଁ ଓଡିଆ ଭାଷାରେ କୌଣସି ପୁସ୍ତକ ପ୍ରକାଶିତ ହୋଇଥିବା ମୋର ମନେ ହୁଏ ନାହିଁ । ତେଣୁ ଏଭଳି ଏକ ପୁସ୍ତକ ଲେଖିବାର ଆବଶ୍ୟକତା ପଡ଼ିଲା । ଏହି ପୁସ୍ତକରେ ମୁଁ ଜିହାଦର ତାତ୍ପର୍ଯ୍ୟ ବର୍ଣ୍ଣନା କରିଛି । ଇସଲାମର ଯୁଦ୍ଧତତ୍ତ୍ୱ ସଂପର୍କରେ ଆଲୋଚନା କରିବା ସହ ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ପ୍ରମୁଖ ଯୁଦ୍ଧଗୁଡିକର କାରଣ ସଂପର୍କରେ ମଧ୍ୟ ସଂକ୍ଷିପ୍ତ ସୂଚନା ଦେଇଛି । ବର୍ତ୍ତମାନ ଚାରିଆଡେ ହିଂସା ଓ ଆତଙ୍କବାଦର ନିଆଁ ଜଳୁଥିବା ବେଳେ ଏହି ଛୋଟ ପୁସ୍ତକଟି ପାଠକଙ୍କ ମନରୁ ଅନେକ ସଂଶୟ ଦୂର କରିପାରିବ ବୋଲି ମୋର ବିଶ୍ୱାସ । ପୁସ୍ତକଟି ମହାନ ଗ୍ରନ୍ଥମାନଙ୍କର ଉଦ୍ଧୃତି ବହନ କରିଥିବା ହେତୁ ଏହାର ପବିତ୍ରତା ରକ୍ଷା କରିବାକୁ ଅନୁରୋଧ ।

(ଶକୀଲ ଅହମଦ)

ଫୋନ - 9861269764

କଟକ

ତା - ୩୦.୧୨.୨୦୧୨

# ସୂଚୀପତ୍ର





# ଆତଙ୍କବାଦ ଏକ ଜଘନ୍ୟ କାର୍ଯ୍ୟ

ବର୍ତ୍ତମାନର ବିଶ୍ୱ ଅଶାନ୍ତି ଓ ଆତଙ୍କର ବାତାବରଣ ମଧ୍ୟରେ ଗତି କରୁଛି । ହିଂସାତ୍ମକ କାର୍ଯ୍ୟକଳାପ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ମଣିଷ ଜୀବନ କେଉଁଠି ହେଲେ ନିରାପଦ ନୁହେଁ । ବସ, ଟ୍ରେନ, ଜାହାଜ, ସର୍ବସାଧାରଣ ସ୍ଥାନ, ପାର୍ଲ୍ୟାମେଣ୍ଟ, ଏପରିକି ମନ୍ଦିର, ମସଜିଦ ଏବଂ ଗୀର୍ଜାରେ ମଧ୍ୟ ବିସ୍ଫୋରଣ ଘଟୁଛି । ମହିଳା ଓ ଶିଶୁମାନେ ମଧ୍ୟ ଏହାର ଶିକାର ହେଉଛନ୍ତି । ଯିଏ କରୁନା କାହିଁକି, ଏହା ଯେ ଏକ ଅମାନୁଷିକ କାର୍ଯ୍ୟ ଏଥିରେ ସନ୍ଦେହ ନାହିଁ । ଏଭଳି କାର୍ଯ୍ୟକୁ କୌଣସି ଧର୍ମ ସହ ଯୋଡିବା ଆଦୌ ଉଚିତ ନୁହେଁ । ଈଶ୍ୱରଙ୍କ ନାମରେ ନିର୍ଦ୍ଦୋଷ ନାଗରିକଙ୍କର ହତ୍ୟାକୁ କୌଣସି ଧର୍ମ ସ୍ୱୀକୃତି ଦେଇ ନପାରେ। ଧର୍ମ ଦୟାମୟଙ୍କ ବିଧାନ ଏବଂ ଜନକଲ୍ୟାଣ ଏହାର ଲକ୍ଷ୍ୟ । ତେଣୁ, ଧର୍ମର କୌଣସି ବିଧି ମାନବତା ବିରୋଧୀ ହେବା ସମ୍ଭବ ନୁହେଁ । ଜିହାଦ ଏବଂ ଆତଙ୍କବାଦ ଉଭୟ ପରସ୍ପର ବିପରୀତଧର୍ମୀ।

ଦୁଃଖର କଥା, ବିଗତ କିଛି ଶତାବ୍ଦୀ ଧରି କେତେକ ପାଶ୍ଚାତ୍ୟ ଲେଖକ, ବିଶେଷତଃ ମହାପୁରୁଷ ମୁହମ୍ମଦଙ୍କ ଖ୍ରୀଷ୍ଟିୟାନ ଜୀବନୀକାରମାନେ ଇସଲାମର ଚରିତ୍ର ସଂହାର କରି ଆସିଛନ୍ତି । ଐତିହାସିକ ଲେନ୍‌ପୁଲଙ୍କ ଭାଷାରେ—

> "ୟୁରୋପୀୟ ଜୀବନୀ ଲେଖକମାନଙ୍କ ଦ୍ୱାରା ମୁହମ୍ମଦଙ୍କ ଜୀବନର ଅଧିକାଂଶ ଘଟଣାବଳୀକୁ ବିକୃତ କରାଯାଇଛି ଏବଂ ହୀନ ଉଦ୍ଦେଶ୍ୟ ସାଧନ ପାଇଁ ତାଙ୍କ ପ୍ରତି ମିଥ୍ୟାରୋପ କରାଯାଇଛି ।"(୧)

କେତେକ ସମାଲୋଚକ ମଧ୍ୟ ଜନମତକୁ ଇସଲାମ ବିରୋଧୀ କରିବା ପାଇଁ ନାନା ପ୍ରକାର କୁତ୍ସାରଟନା କରିଛନ୍ତି । ପବିତ୍ର କୁରଆନର ଉକ୍ତିଗୁଡିକୁ ମୂଳ ପ୍ରସଂଗରୁ ଅଲଗା କରି ସାଂପ୍ରଦାୟିକ ବିଦ୍ୱେଷ ସୃଷ୍ଟି କରିବା ପାଇଁ ବ୍ୟବହାର କରାଯାଉଛି ଏବଂ ଜିହାଦ ଭଳି ଏକ ପବିତ୍ର ଧର୍ମତତ୍ତ୍ୱର ଅର୍ଥକୁ କଦର୍ଥ କରି ଇସଲାମକୁ ହିଂସା ଓ ଆତଙ୍କବାଦ ସହ ଯୋଡାଯାଉଛି । ତିନିତୁଣ୍ଡରେ ଛେଳି କୁକୁର ହେଲାପରି ମାତ୍ରାଧିକ

---

(୧) ଷ୍ଟେନଲୀ ଲେନପୁଲ, ଷ୍ଟଡିଜ୍ ଇନ୍ ଏ ମସ୍କ, ଲଣ୍ଡନ, ୧୮୮୩, ପୃ.୭୬

ଅପପ୍ରଚାର ଯୋଗୁଁ ସାଧାରଣ ଲୋକଙ୍କ ମନରେ ଇସଲାମ ପ୍ରତି ସଂଶୟ ସୃଷ୍ଟି ହେବା ସ୍ୱାଭାବିକ। ଏହାଦ୍ୱାରା ଗୋଟିଏ ପ୍ରତିଷ୍ଠିତ ଧର୍ମର ଭାବମୂର୍ତ୍ତି ନଷ୍ଟ ହେବା ସହିତ ସାଂପ୍ରଦାୟିକ ସୌହାର୍ଦ୍ଦ୍ୟ ଓ ଭାଇଚାରା ପଥରେ ପ୍ରତିବନ୍ଧକ ସୃଷ୍ଟି ହେଉଛି ।



# ଧର୍ମଗ୍ରନ୍ଥର ବ୍ୟାଖ୍ୟା

ଧର୍ମଗ୍ରନ୍ଥ ସାଧାରଣ ନଭେଲ ବା କାହାଣୀ ପୁସ୍ତକ ନୁହେଁ । କେବଳ ଆଖି ବୁଲାଇନେଲେ କେହି ଶାସ୍ତ୍ରବିତ୍ ହୋଇଯାଏ ନାହିଁ । ଧର୍ମଗ୍ରନ୍ଥ ବିଧିବଦ୍ଧ ଅଧ୍ୟୟନ ଆବଶ୍ୟକ କରିଥାଏ। କେଉଁ କଥା କାହାକୁ କୁହାଗଲା, କେଉଁ ସନ୍ଦର୍ଭରେ କୁହାଗଲା ବା ତାହାର ପୃଷ୍ଠଭୂମି କ'ଣ ଥିଲା, ଏଗୁଡ଼ିକ ନ ଜାଣି କେବଳ ଅନୁବାଦ ଦେଖି ଧର୍ମଗ୍ରନ୍ଥର ବ୍ୟାଖ୍ୟା କଲେ ନିଶ୍ଚୟ ଭୁଲ ହେବ। ଗୀତା ବା ମହାଭାରତ ହେଉ, ବାଇବଲ ବା କୁରଆନ ହେଉ, ସମକାଳୀନ ସାମାଜିକ ସମସ୍ୟା ଉପରେ ଆଲୋକପାତ କରିଥାଏ। ତେଣୁ ତତ୍କାଳୀନ ସମାଜର ଇତିହାସ ମଧ୍ୟ ଜାଣିବା ଆବଶ୍ୟକ। ମହାଭାରତ ଯୁଦ୍ଧରେ ଅର୍ଜୁନ ନିଜର ଆତ୍ମୀୟଙ୍କୁ ହତ୍ୟା କରିବାକୁ ଅନିଚ୍ଛା ପ୍ରକାଶ କଲେ; କିନ୍ତୁ ଶ୍ରୀକୃଷ୍ଣ ତାଙ୍କୁ ବୁଝାଇଲେ ଯେ ସେମାନଙ୍କୁ ବଧ କରିବା ଧର୍ମ । ତେବେ ଆତ୍ମୀୟମାନଙ୍କ ହତ୍ୟା ଶାସ୍ତ୍ରସମ୍ମତ ବୋଲି ଯଦି କେହି ଯୁକ୍ତି ବାଢେ, ତେବେ ତାକୁ କ'ଣ ଶାସ୍ତ୍ରଜ୍ଞ କୁହାଯିବ? ଆତ୍ମୀୟମାନଙ୍କୁ ବଧ କରାଯାଉ, ଏହା ଗୀତାର ଯୁଦ୍ଧତତ୍ତ୍ୱ ନୁହେଁ, ବରଂ ଅନ୍ୟାୟ-ଅତ୍ୟାଚାର କରୁଥିବା ବ୍ୟକ୍ତି ଆତ୍ମୀୟ ହେଲେ ସୁଦ୍ଧା ତାକୁ ଦମନ କରାଯାଉ, ଏହା ଅବଶ୍ୟ ଧର୍ମର ଯୁଦ୍ଧତତ୍ତ୍ୱ ।

ଦିବ୍ୟଗ୍ରନ୍ଥରେ ଯୁଦ୍ଧର ଆଦେଶ ଅନ୍ୟାୟ ଓ ଅତ୍ୟାଚାର ବିରୋଧରେ ବା ଆତ୍ମରକ୍ଷା ପାଇଁ ଦିଆଯାଇଥାଏ । ମାନବଜାତି ଈଶ୍ୱରଙ୍କର ପରିବାର ଏବଂ ତାଙ୍କ ପରିବାରର କଲ୍ୟାଣ କରୁଥିବା ବ୍ୟକ୍ତି ତାଙ୍କୁ ସବୁଠାରୁ ପ୍ରିୟ ବୋଲି ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦ କୁହନ୍ତି। ସେ କୁହନ୍ତି—"ତୁମମାନଙ୍କ ମଧ୍ୟରୁ କେହି ମୁସଲମାନ ହୋଇପାରିବ ନାହିଁ ଯଦି ସେ ଅନ୍ୟପାଇଁ ଠିକ୍ ସେଇୟା ନ ଚାହେଁ ଯାହା ସେ

ନିଜ ପାଇଁ ଚାହେଁ ।"[୨] ଏହାହିଁ ବୋଧହୁଏ ପରୋପକାରର ଯଥାର୍ଥ ପରିଭାଷା । ପବିତ୍ର କୁର୍‌ଆନ ଯେଉଁଠାରେ ନାସ୍ତିକମାନଙ୍କ ସହ ଯୁଦ୍ଧ କରିବାକୁ ବା ସେମାନଙ୍କ ସହ ବନ୍ଧୁତା ନ କରିବାକୁ କହିଛି, ତାହା ମୁସଲମାନମାନଙ୍କ ତତ୍କାଳୀନ ଶତ୍ରୁଙ୍କ ସମ୍ପର୍କରେ କହିଛି, ଯେଉଁମାନେ ୧୪ବର୍ଷ କାଳ ସେମାନଙ୍କ ପ୍ରତି ଅତ୍ୟାଚାର କରିଆସିଥିଲେ । ଏଗୁଡ଼ିକ ସବୁ ଯୁଦ୍ଧକାଳୀନ ଆଦେଶ । ଅନ୍ୟଥା ସାଧାରଣ ନାଗରିକଙ୍କ ସହ କଳହ କରିବାକୁ କୌଣସି ଦିବ୍ୟଗ୍ରନ୍ଥ କହନ୍ତି ନାହିଁ । ସମସ୍ତଙ୍କ ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ରଖିବା ଏବଂ ସଭିଙ୍କର ମଙ୍ଗଳ କାମନା କରିବା ଇସ୍‌ଲାମର ମୌଳିକ ଶିକ୍ଷା । ଇସ୍‌ଲାମରେ ମୁସଲିମ୍ ଓ ଅଣମୁସଲିମ୍ ଉଭୟଙ୍କର ମାନବାଧିକାର ସମାନ ।

ଭଲରୂପେ ଅନୁସନ୍ଧାନ ନ କରି ଯିଏ ଯାହା କହିଲା ସେଥିରେ ମାତିଯିବା ଦ୍ୱାରା ଭୟଙ୍କର ଭୁଲ ହୁଏ । ଏହାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି ଉତ୍ତରପ୍ରଦେଶର କାନପୁରରେ ଜନ୍ମଗ୍ରହଣ କରିଥିବା ସ୍ୱାମୀ ଲକ୍ଷ୍ମୀଶଙ୍କରାଚାର୍ଯ୍ୟ । ବ୍ରାହ୍ମଣ ପରିବାରରେ ଜନ୍ମ ନେଇଥିବା ସ୍ୱାମୀ ଲକ୍ଷ୍ମୀଶଙ୍କରାଚାର୍ଯ୍ୟ ଇସଲାମ ବିରୋଧୀ ଅପପ୍ରଚାର ଦ୍ୱାରା ପ୍ରଭାବିତ ହୋଇ ଗୋଟିଏ ପୁସ୍ତକ ଲେଖିଦେଲେ । ସେଥିରେ ଆତଙ୍କବାଦ ପାଇଁ ସେ ଇସଲାମକୁ ଦାୟୀ କରିଥିଲେ। ପୁସ୍ତକଟିର ନାମ "ଇସଲାମୀ ଆତଙ୍କବାଦର ଇତିହାସ' । ପରେ ଏହାର ଇଂରାଜୀ ଅନୁବାଦ "ଦି ହିଷ୍ଟ୍ରି ଅଫ୍ ଇସଲାମିକ୍ ଟେରରିଜମ୍' ନାମକ ପୁସ୍ତକ ମୁମ୍ବାଇରୁ ପ୍ରକାଶିତ ହେଲା । ଯେତେବେଳେ ସେ ସତ୍ୟ କ'ଣ ବୋଲି ଜାଣିଲେ, ସେତେବେଳକୁ ତାଙ୍କ ପୁସ୍ତକ ଦେଶସାରା ପ୍ରସାରିତ ହୋଇ ସାରିଥିଲା। ନିଜ କର୍ମ ପାଇଁ ଘୋର ଅନୁତାପ କରି ସ୍ୱାମୀଜୀ ହିନ୍ଦୀରେ ଆଉ ଗୋଟିଏ ପୁସ୍ତକ ଲେଖିଲେ। ଏହାର ନାମ ରଖିଲେ—"ଇସଲାମ୍ ଆତଙ୍କ୍ ୟା ଆଦର୍ଶ ?'' ଏହି ପୁସ୍ତକର ଭୂମିକାରେ ସେ ନିଜର ଅନୁଭୂତି ବର୍ଣ୍ଣନା କରିଛନ୍ତି। ଲେଖକ କୁହନ୍ତି—

"କିଛି ବର୍ଷ ପୂର୍ବେ ଦୈନିକ ଜାଗରଣରେ ଶ୍ରୀ ବଲରାଜ ମଧୋକଙ୍କ ଲେଖା—'ଦଙ୍ଗା କାହିଁକି ହୁଏ' ପଢ଼ିଥିଲି। ଏହି ଲେଖାରେ

---

(୨) ସହୀ ବୁଖାରୀ, ୧/୧୨ ।

କୁହାଯାଇଥିଲା ଯେ, କୁରଆନ ଗ୍ରନ୍ଥରେ ଥିବା ନାସ୍ତିକମାନଙ୍କ ସହ ଲଢିବାର ଅଲ୍ଲାହଙ୍କ ଆଦେଶ ହିନ୍ଦୁ-ମୁସଲମାନଙ୍କ ହିଂସାର କାରଣ । ଉକ୍ତ ଲେଖାରେ ପବିତ୍ର କୁରଆନର ସେହି ବାଣୀଗୁଡିକ ମଧ୍ୟ ଉଦ୍ଧାର କରାଯାଇଥିଲା ।

ଏହାପରେ କେହି ଜଣେ ମୋତେ ଦିଲ୍ଲୀରୁ ପ୍ରକାଶିତ ଗୋଟିଏ ପ୍ରଚାରପତ୍ର ଦେଲା ଯେଉଁଥିରେ ପବିତ୍ର କୁରଆନର ଚବିଶ ଗୋଟି ମନ୍ତ୍ର ଥିଲା ଯେଉଁଥିରେ ଅନ୍ୟ ଧର୍ମାବଲମ୍ବୀଙ୍କ ସହ ଝଗଡା କରିବାକୁ ଅଲ୍ଲାହ ଆଦେଶ ଦେଇଥିଲେ । ଏହାକୁ ପଢିବା ପରେ ମୋ ମନରେ କୁରଆନ ପଢିବା ପାଇଁ ଉତ୍ସୁକତା ଜାତ ହେଲା । ଇସଲାମୀ ପୁସ୍ତକ ଦୋକାନରୁ କୁରଆନର ହିନ୍ଦୀ ଅନୁବାଦ ମୋତେ ମିଳିଲା । ପ୍ରଚାରପତ୍ରରେ ଉଲ୍ଲେଖ ଥିବା ସବୁ ମନ୍ତ୍ରଗୁଡିକ କୁରଆନର ହିନ୍ଦୀ ଅନୁବାଦରେ ଥିଲା । ଏହାକୁ ଦେଖି ମୋ ମନରେ ଭ୍ରମ ଧାରଣା ସୃଷ୍ଟି ହେଲା ଯେ ଇତିହାସର ହିନ୍ଦୁ ଓ ମୁସଲମାନ ରାଜାଙ୍କ ମଧ୍ୟରେ ହେଉଥିବା ଯୁଦ୍ଧରେ ରକ୍ତପାତ ତଥା ବର୍ତ୍ତମାନର ସାଂପ୍ରଦାୟିକ ଦଂଗା ଓ ଆତଙ୍କବାଦର କାରଣ ହେଉଛି ଇସଲାମ । ମସ୍ତିଷ୍କ ଭ୍ରମିତ ହୋଇ ସାରିଥିଲା, ତେଣୁ ମୋତେ ପ୍ରତ୍ୟେକ ଆତଙ୍କବାଦର ଘଟଣା ସହ ଇସଲାମର ସଂପର୍କ ଥିବା ଭଳି ଜଣାପଡୁଥିଲା ।

ଇସଲାମ, ଇତିହାସ ଓ ବର୍ତ୍ତମାନର ଘଟଣାଗୁଡିକୁ ସଂଯୋଗ କରି ମୁଁ ଗୋଟିଏ ପୁସ୍ତକ ଲେଖିଦେଲି—"ଇସଲାମୀ ଆତଙ୍କବାଦର ଇତିହାସ", ଯାହାର ଇଂରାଜୀ ଅନୁବାଦ "ଦି ହିଷ୍ଟ୍ରି ଅଫ୍ ଇସଲାମିକ୍ ଟେରରିଜମ୍" ନାମରେ ସୁଦର୍ଶନ ପ୍ରକାଶନ, ସୀତା କୁଂଜ, ଲିବର୍ଟି ଗାର୍ଡେନ, ରୋଡ ନଂ-୩, ମଲ୍ଲାଡ (ପଶ୍ଚିମ), ମୁମ୍ବାଇ-୪୦୦୦୬୪ରୁ ପ୍ରକାଶିତ ହେଲା ।

ନିକଟରେ ମୁଁ ଇସଲାମ ଧର୍ମର ବିଦ୍ୱାନଙ୍କ ଲେଖା ପଢ଼ିଲି ଯେ ଇସଲାମର ଆତଙ୍କବାଦ ସହ କୌଣସି ସମ୍ପର୍କ ନାହିଁ । ଇସଲାମ ପ୍ରେମ, ସଦ୍‌ଭାବନା ଓ ଭାଇଚାରାର ଧର୍ମ ଅଟେ । କୌଣସି

ନିର୍ଦ୍ଦୋଷକୁ ହତ୍ୟା କରିବା ଇସଲାମ ଧର୍ମବିରୁଦ୍ଧ। ଆତଙ୍କବାଦ ବିରୁଦ୍ଧରେ ଫତୱା (ଧର୍ମାଦେଶ) ମଧ୍ୟ ପ୍ରକାଶିତ ହେଲା ।

ଏହାପରେ କୁରଆନରେ ଥିବା ଜିହାଦ ସମ୍ପର୍କୀୟ ମନ୍ତ୍ରଗୁଡିକ ସମ୍ବନ୍ଧରେ ଜାଣିବା ପାଇଁ ମୁଁ ମୁସଲମାନ ବିଦ୍ୱାନମାନଙ୍କ ସହ ସମ୍ପର୍କ କଲି ଯେଉଁମାନେ ମୋତେ କହିଲେ ଯେ ପବିତ୍ର କୁରଆନର ବାଣୀଗୁଡିକ ସେ ସମୟର ଭିନ୍ନ ଭିନ୍ନ ପରିସ୍ଥିତିରେ ପ୍ରକଟ ହୋଇଛି । ଏଣୁ, ପବିତ୍ର କୁରଆନର କେବଳ ଅନୁବାଦ ନ ଦେଖି ଏହା ମଧ୍ୟ ଦେଖିବା ଆବଶ୍ୟକ ଯେ କେଉଁ ଆଦେଶ କିଭଳି ପରିସ୍ଥିତିରେ ଦିଆଗଲା । ତେବେ ଯାଇ ତା'ର ସଠିକ ଅର୍ଥ ଏବଂ ଉଦ୍ଦେଶ୍ୟ ଜାଣିହେବ । ଏହା ସହିତ ଧ୍ୟାନ ଦେବା ଉଚିତ ଯେ କୁରଆନ ଇସଲାମର ଈଶରଦୂତ ମହାମାନ୍ୟ ମୁହମ୍ମଦ(ସ)ଙ୍କ ପ୍ରତି ପ୍ରକଟ କରାଯାଇଥିଲା । ସୁତରାଂ କୁରଆନକୁ ସଠିକ ଭାବେ ବୁଝିବା ପାଇଁ ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ଜୀବନୀ ସହ ପରିଚିତ ହେବା ମଧ୍ୟ ଆବଶ୍ୟକ ।... ସେମାନେ ମୋତେ କହିଲେ ଯେ ଇସଲାମ ସମ୍ବନ୍ଧରେ ସଠିକ ଜ୍ଞାନ ନଥିବାରୁ ଲୋକେ କୁରଆନର ପବିତ୍ର ବାଣୀଗୁଡ଼ିକର ଅର୍ଥ ବୁଝିପାରନ୍ତି ନାହିଁ । ଯଦି ଆପଣ କୁରଆନ ସହିତ ମହାମାନ୍ୟ ମୁହମ୍ମଦଙ୍କ ଜୀବନୀ ମଧ୍ୟ ପଢିଥାଆନ୍ତେ, ତେବେ ଆପଣ ଭ୍ରମରେ ପଡି ନ ଥାଆନ୍ତେ । ମୁସଲମାନ ବିଦ୍ୱାନମାନଙ୍କର ପରାମର୍ଶ ଅନୁଯାୟୀ ମୁଁ ସର୍ବପ୍ରଥମେ ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ଜୀବନୀ ପଢିଲି । ଜୀବନୀ ପଢିସାରିଲା ପରେ ସେହି ଦୃଷ୍ଟିକୋଣରୁ ଯେତେବେଳେ ଶୁଦ୍ଧ ମନରେ ମୁଁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପବିତ୍ର କୁରଆନକୁ ପଢ଼ିଲି, ମୋତେ କୁରଆନର ବାଣୀଗୁଡିକର ସଠିକ ଅର୍ଥ ଏବଂ ଉଦ୍ଦେଶ୍ୟ ସ୍ପଷ୍ଟ ହେବାକୁ ଲାଗିଲା ।

ସତ୍ୟ ଜାଣିବାପରେ ମୋତେ ମୋ ଭୁଲ ଜଣାପଡିଲା ଯେ ଅଜ୍ଞତାବଶତଃ ମୁଁ ଭ୍ରମରେ ପଡି ଯାଇଥିଲି ଏବଂ ଏହି କାରଣରୁ ମୁଁ ନିଜ ପୁସ୍ତକ 'ଇସଲାମୀ ଆତଙ୍କବାଦର ଇତିହାସ'ରେ ଆତଙ୍କବାଦକୁ

ଇସଲାମ ସହିତ ଯୋଡିଦେଲି, ଯାହା ପାଇଁ ମୁଁ ଆନ୍ତରିକ ଭାବେ ଦୁଃଖିତ । ମୁଁ ଅଲ୍ଲାହଙ୍କ ନିକଟରେ, ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ନିକଟରେ ଏବଂ ସମସ୍ତ ମୁସଲମାନ ଭାଇମାନଙ୍କ ନିକଟରେ ସାର୍ବଜନିକ ରୂପରେ କ୍ଷମା ପ୍ରାର୍ଥନା କରୁଛି ଏବଂ ଅଜ୍ଞାନତାବଶତଃ ଲେଖିଥିବା ଏବଂ କହିଥିବା ଶବ୍ଦଗୁଡିକୁ ଫେରାଇନେଉଛି । ଜନସାଧାରଣଙ୍କୁ ମୋର ବିନୀତ ଅନୁରୋଧ, "ଇସଲାମୀ ଆତଙ୍କବାଦର ଇତିହାସ' ପୁସ୍ତକରେ ଯାହା ଲେଖାଯାଇଛି, ତାକୁ 'ଶୂନ୍ୟ' ମନେ କରିବେ ।"[୩]

ଇସଲାମର ଶିକ୍ଷା କ'ଣ ଏହା ନିରପେକ୍ଷ ଭାବେ ଜାଣିବାର ଚେଷ୍ଟା ନ କରି ସ୍ୱାମୀ ଅନ୍ୟ ଦ୍ୱାରା ପ୍ରଭାବିତ ହୋଇଯାଇଥିଲେ। ନିଜ ଭୁଲ ସ୍ୱୀକାର କରିବା ସହ ଉଚିତ ପ୍ରତିକାର କରି ସେ ନିଜ ମହାନତାର ପରିଚୟ ଦେଇଛନ୍ତି। ତାଙ୍କ ଅନୁଭବ ଆମ ପାଇଁ ନିଶ୍ଚୟ ଶିକ୍ଷଣୀୟ।



(୩) ଇସଲାମ : ଆତଙ୍କ ୟା ଆଦର୍ଶ, ପୃ.୫, ଭାରତ ଜନସେବା ପ୍ରକାଶନ, ହରଦୋଇ ରୋଡ, ସିକରୋରୀ, କାକୋରୀ, ଲକ୍ଷ୍ନୌ, ଉ.ପ.-୨୨୭୧୦୭

# ଯୁଦ୍ଧ ଅନ୍ତିମ ବିକଳ୍ପ

ଯୁଦ୍ଧ ଦ୍ୱାରା କେବେହେଲେ କୌଣସି ଦେଶର ପ୍ରଗତି ହୁଏନାହିଁ । ଶାନ୍ତି ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ଦ୍ୱାରା ହିଁ ସମାଜର ବହୁବିଧ ବିକାଶ ସାଧନ ସମ୍ଭବ ହୋଇଥାଏ । ଯେତେବେଳେ ଯୁଦ୍ଧ ବ୍ୟତୀତ ଅନ୍ୟ ବାଟ ନଥାଏ, ସେତେବେଳେ ଯୁଦ୍ଧ ଏକ ଆବଶ୍ୟକତା ହୋଇଯାଏ । ଅନ୍ୟଥା ସବୁ ଧର୍ମଗ୍ରନ୍ଥ ଶାନ୍ତି ଓ ଅହିଂସାର ଶିକ୍ଷା ଦେଇଥାଆନ୍ତି । ଗୀତାରେ ଯୁଦ୍ଧ ସମ୍ବନ୍ଧୀୟ ଶତାଧିକ ଶ୍ଳୋକ ଅଛି, କିନ୍ତୁ ଗାନ୍ଧିଜୀଙ୍କ ଅହିଂସା ତତ୍ତ୍ୱ ଗୀତାର ହିଁ ଅବଦାନ । ବାଇବେଲ ଯୁଦ୍ଧ ସମ୍ବନ୍ଧରେ ବହୁ ଉପଦେଶ ଦେଇଛି, କିନ୍ତୁ ମହମାନ୍ୟ ଯୀଶୁ ଯେ ପ୍ରେମ ଓ ସହିଷ୍ଣୁତାର ଶିକ୍ଷା ଦେଇଛନ୍ତି, ଏହା ଅସ୍ୱୀକାର କରାଯାଇପାରିବ ନାହିଁ । ସନାତନ ଧର୍ମଗ୍ରନ୍ଥରେ ଯୁଦ୍ଧବିଦ୍ୟାର ଶିକ୍ଷା ଦିଆଯାଇଛି । ଏହା ସତ୍ତ୍ୱେ 'ସର୍ବେ ଭବନ୍ତୁ ସୁଖିନଃ' ଏହି ଧର୍ମର ମୁଖ୍ୟ ଆଦର୍ଶ ହୋଇ ରହିଛି । ସେହିପରି କୁରଆନରେ ଯୁଦ୍ଧନୀତିର ଶିକ୍ଷା ଦିଆଯାଇଛି । ଏହା ସତ୍ତ୍ୱେ ଶାନ୍ତି ହିଁ ଇସଲାମର ମୂଳ ଲକ୍ଷ୍ୟ । ଯୁଦ୍ଧ ଶାନ୍ତିର ଉଦ୍ୟମ ପାଇଁ ଅନ୍ତିମ ବିକଳ୍ପ ମାତ୍ର ।

ଈଶ୍ୱର ଚାହାନ୍ତି ନାହିଁ ଯେ ତାଙ୍କ ପ୍ରଜାଙ୍କ ପ୍ରତି ଅତ୍ୟାଚାର ହେଉ, ସବଳ ଦୁର୍ବଳଙ୍କୁ ଗିଳି ଦିଅନ୍ତୁ, ସାହୁକାର ଗରିବଙ୍କର ରକ୍ତ ଶୋଷନ୍ତୁ, ଦୁର୍ବଳା ଅବଳାଙ୍କୁ ଯାତନା ଦିଆଯାଉ, ନିର୍ଯ୍ୟାତିତଙ୍କ ଲୁହରେ ଧରଣୀ ଭିଜିଯାଉ ବା ନିଷ୍ପେଷିତଙ୍କ କୋହରେ ଆକାଶ କମ୍ପିଉଠୁ। ଧର୍ମୀୟ ଦୃଷ୍ଟିକୋଣରୁ ହେଉ ବା ମାନବିକ ଦୃଷ୍ଟିକୋଣରୁ ହେଉ, ବ୍ୟକ୍ତିକୁ ଧର୍ମଗତ ସ୍ୱାଧୀନତା ଅବଶ୍ୟ ଦିଆଯିବା ଉଚିତ, କିନ୍ତୁ ସ୍ୱେଚ୍ଛାଚାରିତାର ସ୍ୱାଧୀନତା ଆଦୌ ଦିଆଯିବା ଉଚିତ ନୁହେଁ । ତେଣୁ ଅନ୍ୟାୟ ଅତ୍ୟାଚାରରୁ ସମାଜକୁ ସୁରକ୍ଷା ଦେବା ଲାଗି ସେ ସବୁ ଯୁଗରେ ଆଦେଶ ଦେଇଥାଆନ୍ତି। ବିଶ୍ୱର ମହାନ ଗ୍ରନ୍ଥମାନଙ୍କରେ ଯୁଦ୍ଧବିଦ୍ୟାର ଅନେକ ଦୃଷ୍ଟାନ୍ତ ରହିଛି ।



# ବେଦ ଓ ବାଇବଲ୍‌ର ଯୁଦ୍ଧନୀତି

ଯୁଦ୍ଧବିଦ୍ୟା କ୍ଷତ୍ରୀୟମାନଙ୍କର ଏକ ଅନିବାର୍ଯ୍ୟ ଧର୍ମାଚାର । ବେଦର ବିଭିନ୍ନ ସ୍ଥାନରେ ଧନୁର୍ବିଦ୍ୟା, ଅଶ୍ୱଚାଳନା, ଆଧୁନିକ ଯୁଦ୍ଧଯାନ ନିର୍ମାଣ ଓ କଳକୌଶଳ ଅବଲମ୍ବନ କରିବାର ଶିକ୍ଷା ଦିଆଯାଇଛି । ଦୁଷ୍ଟଦମନ ଓ ପ୍ରଜାମାନଙ୍କ ଅଧିକାରଗୁଡ଼ିକର ସୁରକ୍ଷା ଯେ ଏହାର ଲକ୍ଷ୍ୟ, ଏହା ଅସ୍ୱୀକାର କରାଯାଇପାରିବ ନାହିଁ । ଏଠାରେ କେତୋଟି ଉଦାହରଣ ଦିଆଯାଉଛି ଯାହା ବେଦର ଯୁଦ୍ଧତତ୍ତ୍ୱ ସମ୍ପର୍କରେ କିଛି ଧାରଣା ଦେଇପାରିବ ।

"ବୀର ରାଜପୁରୁଷମାନେ ଯୁଦ୍ଧ ଏବଂ ରକ୍ଷା କରିବା ଉଚିତ ।"
(ଯଜୁଃ- ୨୯/୩୮)

"ରାଜପୁରୁଷ ନିଜର ପ୍ରଜା ଏବଂ ସେନାଙ୍କୁ ବଳଯୁକ୍ତ କରନ୍ତୁ ଏବଂ ଦୁଷ୍ଟଶତ୍ରୁଙ୍କୁ ରାଜ୍ୟରୁ ବାହାର କରି ପ୍ରଜାମାନଙ୍କର ସମୃଦ୍ଧି ନିମନ୍ତେ ଧନ ଓ ବିଦ୍ୟାର ନିରନ୍ତର ଉନ୍ନତି କରନ୍ତୁ ।" (ଋଗ୍-୩/୨୪/୧)

"ମନୁଷ୍ୟ ନିଜର ଶତ୍ରୁର ଯୁଦ୍ଧ ସାମଗ୍ରୀ ଅପେକ୍ଷା ଅଧିକ ଯୁଦ୍ଧ ସାମଗ୍ରୀ ସଂଗ୍ରହ କରି ଉତ୍ତମ ପୁରୁଷମାନଙ୍କ ସହାୟତା ନେଇ ସେହି ଶତ୍ରୁମାନଙ୍କୁ ଜୟ କରିବା ଉଚିତ ।" (ଋଗ୍-୨/୧/୧୦)

"ଧାର୍ମିକ ରାଜା, ପ୍ରଜାମାନେ ସମସ୍ତେ ଚତୁରତାର ସହିତ ଦ୍ୱେଷ, ବୈର କରୁଥିବା ଶତ୍ରୁଲୋକ ଏବଂ ପରଧନ ହରଣକାରୀ ଦୁଷ୍ଟଙ୍କୁ ମାରି ଧର୍ମାନୁକୂଳ ରାଜ୍ୟରେ ଶିକ୍ଷା ଏବଂ ନିଷ୍କଣ୍ଟକ ମାର୍ଗ କରି ବିଦ୍ୟା ବୃଦ୍ଧି କରନ୍ତୁ ।" (ଋଗ୍-୨/୧୩୧/୭)

"ସବୁ ଧାର୍ମିକ ସେନାପତିଙ୍କ ସହିତ ପ୍ରୀତି କରି ଏବଂ ଉତ୍ସାହ ସହିତ ଶତ୍ରୁଙ୍କୁ ଜିଣି ଅତି ଉତ୍ତମ ଧନ ସମୂହ ଲାଭ କରିବା ଉଚିତ ଏବଂ ସେନାପତି ସମୟ ସମୟରେ ନିଜର ବକ୍ତୃତା ଦ୍ୱାରା ଶୂରତା ଆଦି ଗୁଣର ଉପଦେଶ ଦେଇ ଶତ୍ରୁଙ୍କ ସହିତ ନିଜର ସୈନିକମାନଙ୍କୁ ଯୁଦ୍ଧ କରାଇବା ଉଚିତ ।" (ଋଗ୍-୨/୧୩୨/୧)

"ଯେଉଁ ମନୁଷ୍ୟ ଧନୁର୍ବେଦ ବିଜ୍ଞାନର କ୍ରିୟାରେ କୁଶଳୀ ଅଟନ୍ତି, ତାଙ୍କର ସର୍ବଦା ବିଜୟ ହୁଏ । ଯେ ବିଦ୍ୟା, ବିନୟ ଏବଂ ଶୂରତା ଆଦି ଗୁଣ ଦ୍ୱାରା ଭୂଗୋଳର ଏକ ରାଜ୍ୟକୁ ଚାହାନ୍ତି, ସେ କିଛି ମାତ୍ର ଅସମର୍ଥ ହୁଅନ୍ତି ନାହିଁ । (ଯଜୁଃ-୨୯/୩୯)

"ଯେଉଁ ରାଜା ଏବଂ ରାଜପୁରୁଷ ଚକ୍ରବର୍ତ୍ତୀ ରାଜ୍ୟ ଏବଂ ନିଶ୍ଚୟ ବିଜୟ ଚାହାନ୍ତି, ସେ ସୁଶିକ୍ଷିତ ମନ୍ତ୍ରୀ, ଅଶ୍ୱ ଆଦି ତଥା ଅନ୍ୟ ଚଳନଶୀଳ ସାମଗ୍ରୀ, ଅଧ୍ୟକ୍ଷ, ଅସ୍ତ୍ରଶସ୍ତ୍ର ଏବଂ ଶରୀର ଓ ଆତ୍ମବଳକୁ ଅବଶ୍ୟ ସିଦ୍ଧ କରିବା ଉଚିତ ।" (ଯଜୁଃ-୨୯/୪୩)

"ହେ ମନୁଷ୍ୟମାନେ ! ଯେଉଁ ବିଦ୍ୱାନ ତୁମ୍ଭଙ୍କୁ ଧର୍ମଯୁକ୍ତ କର୍ତ୍ତବ୍ୟରେ ପ୍ରବୃତ୍ତ କରି ଦୁଷ୍ଟାଚରଣରୁ ପୃଥକ୍ ରଖନ୍ତି, ଦୁଷ୍ଟାଚାରୀମାନଙ୍କର ବଳକୁ ନଷ୍ଟ ଏବଂ ଆମ୍ଭମାନଙ୍କର ପୁଷ୍ଟି କରନ୍ତି, ସେ ସର୍ବଦା ସତ୍କାର କରିବା ଯୋଗ୍ୟ ଅଟନ୍ତି ।" (ଯଜୁଃ-୨୯/୪୭)

"ରାଜକର୍ମଚାରୀଙ୍କ ସ୍ତ୍ରୀମାନେ ମଧ୍ୟ ଯୁଦ୍ଧକାର୍ଯ୍ୟ ଓ ଅଶ୍ୱଚାଳନା ଜାଣିବା ଉଚିତ ।" (ଯଜୁଃ-୨୯/୫୦)

"ରାଜପୁରୁଷଗଣ ଶ୍ରେଷ୍ଠଲୋକର ସତ୍କାର ଏବଂ ଦୁଷ୍ଟମାନଙ୍କୁ କନ୍ଦାଇବା ଉଚିତ। ସବୁ ମନୁଷ୍ୟଙ୍କର ଦୁର୍ବଳ ମନକୁ ଦୂର କରି ସୁଖକୁ ପ୍ରାପ୍ତ କରାଇବା ଉଚିତ।" (ଯଜୁଃ-୨୯/୫)

"ରାଜପୁରୁଷ ଯେତେବେଳେ ଶତ୍ରୁ ଜୟ ପାଇଁ ସେନା ପଠାନ୍ତି ସେତେବେଳେ ସୈନ୍ୟମାନଙ୍କ ସହିତ ଧନୀ, ଧାର୍ମିକ, ଯୁଦ୍ଧ ବିଶାରଦ, ଯୁଦ୍ଧ କରାଇବାରେ ବିଦ୍ୱାନଜନ ମଧ୍ୟ ଯିବା ଉଚିତ।" (ଋଗ-୧/୧୧୯/୩)[୪]

---

(୪) ଭାଷ୍ୟ- ମହର୍ଷି ଦୟାନନ୍ଦ ସରସ୍ୱତୀ, ଅନୁବାଦ- ଶ୍ରୀ ମଧୁସୂଦନ ମହାନ୍ତି, ପ୍ରକାଶକ - ଧର୍ମଗ୍ରନ୍ଥ ଷ୍ଟୋର, କଟକ-୨ ।

ବାଇବଲ କହେ—

"ଆଉ ସଦାପ୍ରଭୁ ତୁମକୁ ଯୁଦ୍ଧଯାତ୍ରାରେ ପଠାଇ କହିଲେ, ଯାଅ, ସେହି ଅମାଲେକୀୟ ପାପୀମାନଙ୍କୁ ବର୍ଜିତ ରୂପେ ବିନାଶ କର, ଆଉ ସେମାନେ ନିଃଶେଷରେ ଉଚ୍ଛନ୍ନ ହେବା ପର୍ଯ୍ୟନ୍ତ ସେମାନଙ୍କ ସଙ୍ଗେ ଯୁଦ୍ଧ କର ।"

(ପ୍ରଥମ ଶାମୁୟେଲ, ୧୫/୧୮)

"ତୁମ୍ଭେ ଆପଣା ଶତ୍ରୁମାନଙ୍କ ପ୍ରତିକୂଳରେ ଯୁଦ୍ଧ କରିବାକୁ ବାହାରିଲେ ଯେବେ ଆପଣା ଅପେକ୍ଷା ଅଧିକ ଅଶ୍ୱ ଓ ରଥ ଓ ଲୋକ ଦେଖିବ, ତେବେ ତୁମ୍ଭେ ସେମାନଙ୍କ ବିଷୟରେ ଭୀତ ହେବନାହିଁ । କାରଣ ଯେ ତୁମ୍ଭଙ୍କୁ ମିଶର ଦେଶରୁ ଆଣିଛନ୍ତି, ସେହି ସଦାପ୍ରଭୁ ତୁମ୍ଭ ପରମେଶ୍ୱର ତୁମ୍ଭ ସଙ୍ଗରେ ଅଛନ୍ତି ।"

(ଦ୍ୱିତୀୟ ବିବରଣ, ୨୦/୧)[୫]

ତେଣୁ, ଧର୍ମଯୁଦ୍ଧ କୌଣସି ନୂଆ ଧର୍ମତତ୍ତ୍ୱ ନୁହେଁ । ପ୍ରତ୍ୟେକ ଯୁଗରେ ଏହା ଈଶ୍ୱରଙ୍କ ଧର୍ମବ୍ୟବସ୍ଥାର ଗୋଟିଏ ଅଙ୍ଗ ହୋଇ ରହିଆସିଛି। ତେଣୁ କୁରଆନରେ ଯୁଦ୍ଧର ଆଦେଶ ଦେଖି ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।



(୫) ପବିତ୍ର ବାଇବଲ୍, ପ୍ରକାଶକ- ବାଇବଲ୍ ସୋସାଇଟି ଅଫ୍ ଇଣ୍ଡିଆ, ମହାତ୍ମାଗାନ୍ଧୀ ରୋଡ୍, ବାଙ୍ଗାଲୋର-୫୬୦ ୦୦୧ ।

# ଇସଲାମ ଦୃଷ୍ଟିରେ ମଣିଷ ଜୀବନ

ଆସନ୍ତୁ ପ୍ରଥମେ ଜାଣିବା ଯେ ଇସଲାମ ଦୃଷ୍ଟିରେ ମଣିଷ ଜୀବନର ମୂଲ୍ୟ କ'ଣ । ଯଦି କୌଣସି ଧର୍ମଦୃଷ୍ଟିରେ ମଣିଷ ଜୀବନର ମୂଲ୍ୟ ନାହିଁ, ତାକୁ ଧର୍ମ କିପରି କହିବା ? ଏଭଳି ଧର୍ମ ଗ୍ରହଣଯୋଗ୍ୟ ନୁହେଁ । ଚାଣକ୍ୟ ନୀତି କହେ— 'ତ୍ୟଜେଦ୍ଧର୍ମଂ ଦୟାହୀନଂ ବିଦ୍ୟାହୀନଂ ଗୁରୁ ତ୍ୟଜେତ୍ ।' ଦୟାହୀନ ଧର୍ମ ଓ ବିଦ୍ୟାହୀନ ଗୁରୁଙ୍କୁ ତ୍ୟାଗ କରିବା ଉଚିତ । ମଣିଷ ଈଶ୍ୱରଙ୍କର ଅତି ପ୍ରିୟ ଜୀବ । ସେ ସଂସାରର ସାରସୃଷ୍ଟି । ତା'ରି ପାଇଁ ଏ ସଂସାରର କାରଖାନା ଚାଲିଛି । ତା'ରି ପାଇଁ ସୂର୍ଯ୍ୟ ଉଏଁ, ତା'ରି ପାଇଁ ଚନ୍ଦ୍ର ଉଠେ, ତା'ରି ପାଇଁ ପବନ ବହେ, ତା'ରି ପାଇଁ ବର୍ଷା ହୁଏ ଏବଂ ତା'ରି ପାଇଁ ପଶୁପକ୍ଷୀ, ବୃକ୍ଷଲତା, ବଣ, ପାହାଡ ଓ ସାଗରର ସୃଷ୍ଟି । ସମସ୍ତେ ଅହରହ ମଣିଷର ସେବାରତ । ତେଣୁ ତା' ଜୀବନର ମୂଲ୍ୟ ସହଜରେ ଅନୁମେୟ । ଏହି କାରଣରୁ ଦିବ୍ୟବିଧାନରେ ମଣିଷ ଜୀବନର ସୁରକ୍ଷା ଲାଗି କଠୋର ନୀତି-ନିୟମ ଥାଏ । ଇସଲାମ ଧର୍ମରେ ବଞ୍ଚିବାର ଅଧିକାର ମାନବାଧିକାର ତାଲିକାର ସର୍ବାଗ୍ରରେ ରହିଛି । ଏହା ସମାଜରେ ତା'ର ସର୍ବପ୍ରଥମ ଅଧିକାର । ଏହି କାରଣରୁ ନରହତ୍ୟାର ସମସ୍ତ ସ୍ୱରୂପ ଯଥା—ହତ୍ୟା[୬], ଆତ୍ମହତ୍ୟା[୭], ଭ୍ରୂଣହତ୍ୟା[୮] ଇତ୍ୟାଦି ଇସଲାମରେ ନିଷିଦ୍ଧ କରାଯାଇଛି ।

ମଣିଷ ଜୀବନର ମୂଲ୍ୟାଙ୍କନ କରି କୁରଆନ କହେ—

"ଯଦି କେହି ଏଭଳି ବ୍ୟକ୍ତିର ପ୍ରାଣ ନିଏ ଯିଏ କାହାରି ହତ୍ୟା କରିନାହିଁ କିମ୍ବା ଧରାପୃଷ୍ଠରେ ବିଶୃଙ୍ଖଳା ସୃଷ୍ଟି କରିନାହିଁ, ତେବେ ସେ ସମଗ୍ର ମାନବଜାତିକୁ ହତ୍ୟା କଲା ଏବଂ ଯିଏ କାହାରି ଜୀବନ ରକ୍ଷା କଲା, ସେ ସମଗ୍ର ମାନବଜାତିକୁ ରକ୍ଷା କଲା ।

(କୁରଆନ-୫/୩୨)

---

(୬) କୁରଆନ-୫/୩୨

(୭) କୁରଆନ-୪/୨୯

(୮) କୁରଆନ-୧୭/୩୧

ସୁତରାଂ ଇସଲାମ ଅନୁସାରେ ନରହତ୍ୟା କରି ନଥିବା କିମ୍ବା ସମାଜରେ ଅଶାନ୍ତି ବା ଅସ୍ଥିରତା ସୃଷ୍ଟି କରି ନଥିବା କୌଣସି ବ୍ୟକ୍ତିର ହତ୍ୟା ଜଘନ୍ୟ ଅପରାଧ । ମଣିଷ ଯେକୌଣସି ଜାତି ବା ଧର୍ମର ହେଉ, ଅନ୍ୟାୟରେ ତା'ର ପ୍ରାଣ ନେବା ମହାପାପ । ମହାମାନ୍ୟ ମୁହମ୍ମଦ କୁହନ୍ତି ଯେ, ଯିଏ ବିନା ଅଧିକାରରେ ଅନ୍ୟର ରକ୍ତପାତ କରିବା ପାଇଁ ଚାହେଁ, ସେ ଅଲ୍ଲାହଙ୍କ ନିକଟରେ ସବୁଠାରୁ ଅଧିକ ଘୃଣ୍ୟ ବ୍ୟକ୍ତି ।[୯] କେତୋଟି ମହାପାପ ସମ୍ବନ୍ଧରେ ସୂଚନା ଦେଇ ମହାମାନ୍ୟ ଈଶ୍ୱରଦୂତ କହିଲେ ଯେ, ସେଗୁଡିକ ହେଉଛି—(୧) ଉପାସନାରେ ଅନ୍ୟ କାହାରିକୁ ଅଲ୍ଲାହଙ୍କ ସହ ଅଂଶୀଦାର କରିବା, (୨) ପିତାମାତାଙ୍କ ପ୍ରତି ନିଜ କର୍ତ୍ତବ୍ୟ ନ କରିବା, (୩) ନରହତ୍ୟା କରିବା ଏବଂ (୪) ମିଥ୍ୟା ସାକ୍ଷୀ ଦେବା ।[୧୦]

କେବଳ ମଣିଷ ନୁହେଁ, ଇସଲାମ ଜୀବଜନ୍ତୁଙ୍କ ପ୍ରତି ମଧ୍ୟ ଦୟା କରିବାର ଶିକ୍ଷା ଦେଇଛି । ଜୀବଜନ୍ତୁଙ୍କ ପ୍ରତି ଦୟା କରିବା ଏକ ପୁଣ୍ୟକାର୍ଯ୍ୟ ବୋଲି ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦ କହିଛନ୍ତି । ସୁତରାଂ ସେ କୁହନ୍ତି ଯେ, ଗୋଟିଏ ଶୋଷିଲା କୁକୁରର ବିକଳ ସହି ନ ପାରି ଜଣେ ବ୍ୟକ୍ତି ଜୋତାରେ କୂଅରୁ ପାଣି ସଂଗ୍ରହ କରି ତାକୁ ପିଇବାକୁ ଦେଇଥିଲା । ବ୍ୟକ୍ତିଟିର ଏହି କର୍ମ ଦ୍ୱାରା ଈଶ୍ୱର ଅତି ପ୍ରସନ୍ନ ହେଲେ ଏବଂ ତା'ର ସକଳ ପାପ କ୍ଷମା କରିଦେଲେ । ଈଶ୍ୱରଦୂତ ଏହା ମଧ୍ୟ କହିଲେ ଯେ, ପ୍ରତ୍ୟେକ ଜୀବର ସେବାରେ ପୁଣ୍ୟ ମିଳେ ।[୧୧] ସେହିପରି ଜଣେ ମହିଳା ଗୋଟିଏ ବିରାଡିକୁ ଖାଇବାକୁ ନ ଦେଇ ବାନ୍ଧି ରଖିଥିବାରୁ ବିରାଡିଟି ମରିଗଲା । ମହାମାନ୍ୟ ଈଶ୍ୱରଦୂତ କୁହନ୍ତି ଯେ, ସେହି ମହିଳାର ନିଷ୍ଠୁର ଆଚରଣ ପାଇଁ ତାକୁ ନର୍କଦଣ୍ଡ ଦିଆଗଲା ।[୧୨] ଗଛମୂଳେ ବିଶ୍ରାମ ନେଉଥିବା କୌଣସି ଜଣେ ଈଶ୍ୱରଦୂତଙ୍କୁ ପିମ୍ପୁଡି କାମୁଡିଦେବାରୁ ସେ ସେଠାରେ ଥିବା ପିମ୍ପୁଡିବସାରେ ନିଆଁ ଲଗାଇଦେବାର ଆଦେଶ ଦେଇଥିଲେ । ମହାମାନ୍ୟ ମୁହମ୍ମଦ କୁହନ୍ତି ଯେ, ସେହି ଈଶ୍ୱରଦୂତଙ୍କୁ ତତ୍କ୍ଷଣାତ ଦୈବବାଣୀ ଦ୍ୱାରା ଆକଟ କରିଦିଆଗଲା ।[୧୩]

---

(୯) ସହୀ ବୁଖାରୀ, ୯ମ ଖଣ୍ଡ, ବାଣୀ ୨୧

(୧୦) ସହୀ ବୁଖାରୀ, ୩ୟ ଖଣ୍ଡ, ବାଣୀ ୮୨୧

(୧୧) ସହୀ ବୁଖାରୀ, ୩ୟ ଖଣ୍ଡ, ବାଣୀ ୫୫୧

(୧୨) ସହୀ ବୁଖାରୀ, ୪ର୍ଥଖଣ୍ଡ, ବାଣୀ ୬୮୯

(୧୩) ସହୀ ବୁଖାରୀ, ୪ର୍ଥଖଣ୍ଡ, ବାଣୀ ୫୩୬

ବର୍ତ୍ତମାନ ଟିକିଏ ଚିନ୍ତା କରିବା ଯେ ଇସଲାମ ପ୍ରତି ଆତଙ୍କବାଦର ଆରୋପର ସତ୍ୟତା କେତେ! ସତରେ କ'ଣ ଇସଲାମ ଜିହାଦ ନାମରେ ନିରୀହଲୋକଙ୍କୁ ହତ୍ୟା କରିବାର ଶିକ୍ଷା ଦେଇଛି ? ଯେଉଁ ଧର୍ମ କହେ ଯେ ଶୋଷିଲା କୁକୁରକୁ ପାଣି ପିଆଇଦେଲେ ବୈକୁଣ୍ଠ ପ୍ରାପ୍ତି ହୋଇପାରେ, ଯେଉଁ ଧର୍ମ କହେ ଯେ ବିଲେଇଟିକୁ ମାରିଦେଲେ ମଣିଷକୁ ନର୍କଦଣ୍ଡ ମିଳିପାରେ ଏବଂ ଯେଉଁ ଧର୍ମରେ ସାମାନ୍ୟ ପିମ୍ପୁଡିକୁ ଅକାରଣରେ ମାରିଦେବା ଯୋଗୁଁ ସ୍ୱୟଂ ଈଶ୍ୱରଦୂତଙ୍କୁ ସାବଧାନ କରିଦିଆଯାଏ, ଏଭଳି ଧର୍ମଟିଏ କ'ଣ ସଂସାରର ସାରସୃଷ୍ଟି ମଣିଷକୁ ବିନା ଦୋଷରେ ହତ୍ୟା କରିବାର ଶିକ୍ଷା ଦେଇପାରେ ?



# ନରହତ୍ୟାର ଶାସ୍ତ୍ରୀୟ ବୈଧତା

ଧର୍ମ ଏହା ମଧ୍ୟ କହି ନାହିଁ ଯେ ମଣିଷ ଯାହା କଲେ ବି ତାକୁ ଦଣ୍ଡ ଦିଆଯିବ ନାହିଁ । ସେ ନରହତ୍ୟା କରୁ, ସମାଜରେ ଅଶାନ୍ତି ବା ଅସ୍ଥିରତା ସୃଷ୍ଟି କରୁ କିମ୍ବା ଅନ୍ୟ ଗୃହର ପବିତ୍ରତା ଲଂଘନ କରୁ, ଯାହା କଲେ ମଧ୍ୟ ତା' ପ୍ରତି ହିଂସା ଆଚରଣ କରାଯିବ ନାହିଁ । ଏଭଳି ଅନ୍ୟାୟର ଆଦେଶ ଦିବ୍ୟଗ୍ରନ୍ଥ ଦିଅନ୍ତି ନାହିଁ । ଅହିଂସାର ଅର୍ଥ ନୁହେଁ ଯେ କୌଣସି ପରିସ୍ଥିତିରେ ମଧ୍ୟ କାହାରି ପ୍ରତି ହିଂସା କରାଯିବ ନାହିଁ, ଯଥା—ମାଆ ବାପା ପିଲାକୁ ମାରିବେ ନାହିଁ, ଶିକ୍ଷକ ଛାତ୍ରଛାତ୍ରୀଙ୍କୁ ଶୃଙ୍ଖଳିତ କରିବେ ନାହିଁ, ରାଜା ଦୁଷ୍ଟଙ୍କୁ ଦଣ୍ଡ ଦେବେ ନାହିଁ ବା ସରକାର ଅପରାଧ ନିୟନ୍ତ୍ରଣ କରିବେ ନାହିଁ । ପ୍ରତ୍ୟେକ ଦେଶର ସୈନ୍ୟବାହିନୀ ଥାଏ, ଯାହାର କାମ ହେଲା ଯୁଦ୍ଧ କରିବା । କିନ୍ତୁ ନରହତ୍ୟା ଏହାର ଲକ୍ଷ୍ୟ ନୁହେଁ, ବରଂ ଲକ୍ଷ୍ୟ ନିଜ ଦେଶର ସୁରକ୍ଷା । ଏହାକୁ ହିଂସା କୁହାଯିବ ନାହିଁ । ମନୁଷ୍ୟର ରାଜସିକ ଓ ତାମସିକ ଗୁଣ ସମ୍ପୂର୍ଣ୍ଣ ରୂପେ ଦୂର ହେବା ଅସମ୍ଭବ । କେବଳ ହିତୋପଦେଶ ଦ୍ୱାରା ଖଳ ପ୍ରକୃତିର ଲୋକଙ୍କୁ ଶୃଙ୍ଖଳିତ କରିବା ସମ୍ଭବ ନୁହେଁ । ସେମାନଙ୍କୁ ନିୟନ୍ତ୍ରଣ ନ କଲେ ମଣିଷର ମୌଳିକ ଅଧିକାରଗୁଡ଼ିକର ସୁରକ୍ଷା ହୋଇପାରିବ ନାହିଁ ବା ସାଧାରଣଲୋକେ ସୁଖ ଶାନ୍ତିରେ ରହିପାରିବେ ନାହିଁ । ତେଣୁ, ଦୁଷ୍ଟଦମନ ପାଇଁ କରାଯାଉଥିବା ପ୍ରୟାସ

ହିଂସା ନୁହେଁ । ସବୁ ବାପା ମାଆ ନିଜ ପିଲାଙ୍କୁ ଭଲ ପାଆନ୍ତି । କେହି ନିଜ ସନ୍ତାନ ପ୍ରତି ହିଂସା କରିବାକୁ ଚାହାନ୍ତି ନାହିଁ । ରାଗରେ ମାଡ ଗାଳି ଦେଇଥିଲେ ପରେ ମନ କଷ୍ଟ କରନ୍ତି ଯେ କାହିଁକି ମୋ ପିଲାକୁ ମାରିଲି । ପିଲା ପାଦରେ କଣ୍ଟାଟିଏ ପଶିଗଲେ ବାପା ମାଆଙ୍କୁ କଷ୍ଟ ହୁଏ । କିନ୍ତୁ ପିଲାର ସେହି ପାଦଟି ଯଦି ରୋଗଗ୍ରସ୍ତ ହୋଇଯାଏ ଏବଂ ଆରୋଗ୍ୟ ସମ୍ଭବ ହୁଏ ନାହିଁ, ତେବେ ଚିକିତ୍ସକ ଗୋଡ କାଟିଦେବାର ପରାମର୍ଶ ଦିଅନ୍ତି । ସେ କୁହନ୍ତି ଗୋଡ ନ କାଟିଲେ ପିଲା ବଞ୍ଚିବ ନାହିଁ । ସନ୍ତାନର ଜୀବନ ବଂଚାଇବାକୁ ଯାଇ ବାପା ମାଆ ତା' ଗୋଡ କାଟିଦେବା ପାଇଁ ସ୍ୱୀକୃତି ଦିଅନ୍ତି । ଏହା ପିତାମାତାଙ୍କର ନିଜ ସନ୍ତାନ ପ୍ରତି ହିଂସା ନୁହେଁ । ସେହିପରି ସାମୂହିକ କଲ୍ୟାଣ ପାଇଁ ସମାଜର ଅନିଷ୍ଟକାରୀ ଅଙ୍ଗଟିକୁ କାଟି ଦେବା ବ୍ୟକ୍ତିଗତ ଦୃଷ୍ଟିରୁ ହିଂସା ଜଣାପଡୁଥିଲେ ମଧ୍ୟ ଏହା ହିଂସା ନୁହେଁ । ସମାଜର ଏହା ଏକ ଅସ୍ତ୍ରୋପଚାର ମାତ୍ର ।

ଆମ ଭଳି ଅନ୍ୟ ମଣିଷଟିର ମଧ୍ୟ କିଛି ଅଧିକାର ଅଛି । ତେଣୁ ସମସ୍ତେ ନିଜ ଅଧିକାରର ପରିସର ଜାଣିବା ଉଚିତ । ଆମ ଅଧିକାର ସେହିଠାରେ ଶେଷ ହୁଏ, ଯେଉଁଠାରୁ ସମାଜର ଅଧିକାର ଆରମ୍ଭ ହୁଏ । ଯଦି କେହି ଅନ୍ୟର କିଛି ମୌଳିକ ଅଧିକାର କ୍ଷୁଣ୍ଣ କରେ, ତେବେ ତାକୁ ନିଜର କିଛି ଅଧିକାର ହରାଇବାକୁ ପଡେ । **ଯଦି ସେ କାହାକୁ ହତ୍ୟା କରେ ବା ସମାଜରେ ଅଶାନ୍ତି ସୃଷ୍ଟି କରେ,** ତେବେ ସେ ମୁସଲମାନ ହୋଇଥିଲେ ମଧ୍ୟ ନିଜର ବଞ୍ଚି ରହିବାର ଅଧିକାର ହରାଇବ । କେବଳ ଏହି ଦୁଇଟି କାରଣରୁ ଇସଲାମରେ ନରହତ୍ୟାର ଯଥାର୍ଥତା ରହିଛି । ସମାଜର ଏଭଳି ବ୍ୟକ୍ତିକୁ ପ୍ରାଣଦଣ୍ଡ ଦେବା, ଜୀବନ ପ୍ରତି ବିପଦ ସୃଷ୍ଟି କରିଥିବା କୌଣସି ରୋଗଗ୍ରସ୍ତ ଅଙ୍ଗକୁ ଶରୀରରୁ କାଟି ଅଲଗା କରିବା ସହ ସମାନ । ଦେଶରେ ଅଶାନ୍ତି ବା ଅସ୍ଥିରତା ସୃଷ୍ଟି କରୁଥିବା ବ୍ୟକ୍ତିକୁ ମୃତ୍ୟୁଦଣ୍ଡ ଭଳି କଠୋର ଦଣ୍ଡ ଦିଆଯିବା ଉଚିତ ବୋଲି ପବିତ୍ର କୁରଆନ କହିଛି—

> "ଯେଉଁମାନେ ଅଲ୍ଲାହ ଓ ତାଙ୍କ ଧର୍ମଦୂତଙ୍କ ସହ ଯୁଦ୍ଧ କରନ୍ତି ଏବଂ ଦେଶରେ ଅସ୍ଥିରତା ସୃଷ୍ଟି କରିବାଲାଗି (ସବୁବେଳେ) ତତ୍ପର ରୁହନ୍ତି, ସେମାନଙ୍କ ଦଣ୍ଡ ହେଉଛି ଯେ ସେମାନଙ୍କୁ ହତ୍ୟା କରି

ଦିଆଯାଉ ବା ଶୁଳି ଦିଆଯାଉ କିମ୍ବା ସେମାନଙ୍କର ହାତ ଓ ଗୋଡ ବିପରୀତ ଦିଗରୁ କାଟି ଦିଆଯାଉ ।" (କୁରଆନ-୫/୩୩)

ସମାଜକୁ ଅପରାଧମୁକ୍ତ ରଖିବାଲାଗି ଏହା ଏକ ଉପଚାର । ଦଣ୍ଡବିଧାନ କେବଳ ରାଷ୍ଟ୍ରମୁଖ୍ୟ ବା ନ୍ୟାୟାଳୟର ଦାୟିତ୍ୱ । ଉପଯୁକ୍ତ ଅଦାଲତ ହିଁ ଏହାର ନିଷ୍ପତ୍ତି କରିପାରିବ ଯେ ଜଣେ ବ୍ୟକ୍ତି ପ୍ରକୃତରେ ଅନ୍ୟର ହତ୍ୟା କରି ବା ସମାଜର ଶାନ୍ତି ପ୍ରତି ବିପଦ ସୃଷ୍ଟି କରି ନିଜର ବଞ୍ଚିରହିବାର ଅଧିକାର ହରାଇଛି ନା ନାହିଁ ।



# ଜିହାଦ୍

ଅଧିକାଂଶ ଲୋକଙ୍କର ଧାରଣା ରହିଛି ଯେ ଜିହାଦ୍ ଅର୍ଥ ଯୁଦ୍ଧ । ପ୍ରକୃତରେ 'ଜିହାଦ୍' ଅର୍ଥ ଯୁଦ୍ଧ ନୁହେଁ । ଏହାର ଅର୍ଥ 'ସଂଘର୍ଷ' । ଏହି ସଂଘର୍ଷ ସତ୍‌ପଥରେ ଏବଂ ଭଗବତପ୍ରାପ୍ତି ଉଦ୍ଦେଶ୍ୟରେ କରାଯାଇଥାଏ । ପାରିବାରିକ ଓ ସାମାଜିକ ଜୀବନର ଝଡ଼ଝଞ୍ଜା ଭିତରେ, ବଞ୍ଚି ରହିବାର ଦୈନନ୍ଦିନ ସଂଗ୍ରାମ ଭିତରେ, ନ୍ୟାୟ ଓ ଅନ୍ୟାୟର ଟଣାଓଟରା ମଧ୍ୟରେ, ତଥା କାମ, କ୍ରୋଧ, ଲୋଭ, ମୋହ ଆଦିର ଆକର୍ଷଣ ଭିତରେ ଅବିଚଳିତ ରହି ସତ୍‌ପଥରେ ଚାଲିବାର ନାମ ଜିହାଦ। ସଦ୍‌ଜୀବନଯାପନ ପାଇଁ ମଣିଷର ପ୍ରଚେଷ୍ଟା, ଇନ୍ଦ୍ରିୟନିଗ୍ରହ ଲାଗି ତା'ର ସାଧନା, ଆତ୍ମରକ୍ଷା ବା ଧର୍ମରକ୍ଷା ଲାଗି ତା'ର ଉଦ୍ୟମ ଏବଂ ଅନ୍ୟାୟ-ଅତ୍ୟାଚାର ବିରୋଧରେ ତା' ସଂଘର୍ଷକୁ ଇସଲାମରେ 'ଜିହାଦ୍' କୁହାଯାଏ। ଧର୍ମଯୁଦ୍ଧ ମଧ୍ୟ ସେହିପରି ଗୋଟିଏ ସଂଘର୍ଷ । ଏହା ଜିହାଦ ମଧ୍ୟ ।

**ସତ୍‌ପଥରେ ସଂଘର୍ଷ ଜିହାଦ**

"ଯେଉଁମାନେ ଆମ୍ଭ ସକାଶେ ସଂଘର୍ଷ କରନ୍ତି, ଆମ୍ଭେ ଅବଶ୍ୟ ସେମାନଙ୍କୁ ଆମର ପଥ ପ୍ରଦର୍ଶନ କରୁ ଏବଂ ଅଲ୍ଲାହ ସଦାଚାରୀଙ୍କ ସହ ଥାଆନ୍ତି ।" (କୁରଆନ-୨୯/୬୯)

## ସତ କହିବା ଶ୍ରେଷ୍ଠ ଜିହାଦ

"ଜଣେ ବ୍ୟକ୍ତି ପଚାରିଲା କେଉଁ ଜିହାଦ ସର୍ବଶ୍ରେଷ୍ଠ ? ମହାମାନ୍ୟ ମୁହମ୍ମଦ ଉତ୍ତର ଦେଲେ, "ଅତ୍ୟାଚାରୀ ଶାସକ ସମ୍ମୁଖରେ ସତକଥା କହିବା ।" (ନିସାଇ-୪/୨୦୯)

ପବିତ୍ର କୁରଆନ ଅନୁସାରେ ନିମ୍ନ ତିନୋଟି କାରଣରୁ କରାଯାଉଥିବା ଯୁଦ୍ଧ ଯଥାର୍ଥ ।

### (୧) ଆତ୍ମରକ୍ଷା

"ଯେଉଁମାନେ ତୁମ ସହିତ ଲଢୁଛନ୍ତି ସେମାନଙ୍କ ସହ ଅଲ୍ଲାହଙ୍କ ପଥରେ ତୁମେମାନେ (ମଧ୍ୟ) ଯୁଦ୍ଧ କର, କିନ୍ତୁ ସୀମା ଲଂଘନ କରନାହିଁ । ଅଲ୍ଲାହ୍ ସୀମା ଲଂଘନକାରୀଙ୍କୁ ମିତ୍ର କରନ୍ତି ନାହିଁ ।" (କୁରଆନ-୨/୧୯୦)

ଯଦି ମୁସଲମାନଙ୍କ ଉପରେ ଆକ୍ରମଣ ହୁଏ, ତେବେ ଆତ୍ମରକ୍ଷା ପାଇଁ ସେମାନେ ଯୁଦ୍ଧ କରିପାରିବେ । କିନ୍ତୁ କୁରଆନ ଏଠାରେ ଗୁରୁତ୍ୱପୂର୍ଣ୍ଣ କଥାଟିଏ କହିଛି ଯେ ଯଦିଓ ଆକ୍ରମଣକାରୀ ତୁମର ଶତ୍ରୁ, ତଥାପି ସେମାନଙ୍କ ପ୍ରତି ଅନ୍ୟାୟ କର ନାହିଁ । ଅର୍ଥାତ୍ ଶକ୍ତିର ପ୍ରୟୋଗ ସେହି ସ୍ଥାନରେ କର ଯେଉଁଠି ଏହାର ଆବଶ୍ୟକତା ଅଛି ଏବଂ ସେତିକି ପରିମାଣରେ କର ଯେତିକି ନିହାତି ଦରକାର । ଅନାବଶ୍ୟକ ରକ୍ତପାତ କରନାହିଁ ।

### (୨) ଧର୍ମରକ୍ଷା

"ଯେଉଁମାନଙ୍କ ସହ ଯୁଦ୍ଧ କରାଯାଉଛି, ସେମାନଙ୍କୁ ମଧ୍ୟ (ଯୁଦ୍ଧ କରିବାର) ଅନୁମତି ଦିଆଯାଉଛି, କାରଣ ସେମାନଙ୍କ ପ୍ରତି ଅତ୍ୟାଚାର ହୋଇଛି ଏବଂ ଅଲ୍ଲାହ୍ ନିଶ୍ଚୟ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ସମର୍ଥ । ସେମାନଙ୍କୁ ଅନ୍ୟାୟରେ ସେମାନଙ୍କ ଘରୁ ବାହାର କରିଦିଆଯାଇଛି । (ସେମାନେ କିଛି ଦୋଷ କରି ନ ଥିଲେ) ହଁ, ସେମାନେ (କେବଳ) ଏତିକି କହୁଛନ୍ତି ଯେ ଆମ ପ୍ରଭୁ ଅଲ୍ଲାହ ଅଟନ୍ତି ।" (କୁରଆନ-୨୨/୩୯)

**(୩) ଅନ୍ୟାୟ ଓ ଅତ୍ୟାଚାର**

"ଏବଂ ତୁମମାନଙ୍କୁ କ'ଣ ହେଲା ଯେ ତୁମେ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ଏବଂ ସେଇ ଦୁର୍ବଳ ପୁରୁଷ, ମହିଳା ଓ ଶିଶୁମାନଙ୍କୁ ଉଦ୍ଧାର କରିବା ନିମନ୍ତେ ଯୁଦ୍ଧ କରୁନାହଁ, ଯେଉଁମାନେ ଗୁହାରି କରୁଛନ୍ତି—ହେ ପ୍ରଭୁ ! ଏହି ଅତ୍ୟାଚାରୀମାନଙ୍କ ବସତିରୁ ଆମକୁ ଉଦ୍ଧାର କର ଆଉ ଆମ ପାଇଁ ନିଜ ଆଡୁ ଜଣେ ରକ୍ଷାକାରୀ ବନ୍ଧୁ ନିଯୁକ୍ତ କର ଓ ନିଜ ଆଡୁ କାହାରିକୁ ଆମର ସାହାଯ୍ୟକାରୀ କରିଦିଅ।" (କୁରଆନ-୪/୭୫)

## ସାଧାରଣ ନାଗରିକଙ୍କ ପ୍ରତି ସଦବ୍ୟବହାର

ସାଧାରଣ ନାଗରିକଙ୍କ ପ୍ରତି ସଦବ୍ୟବହାର କରିବା ଏବଂ ଜାତିଧର୍ମ ନିର୍ବିଶେଷରେ ସମସ୍ତଙ୍କ ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ରଖିବା ଉଚିତ ବୋଲି କୁରଆନ ଉପଦେଶ ଦେଇଛି—

"ଯେଉଁମାନେ ଧର୍ମ ସମ୍ପର୍କରେ ତୁମ ସହ ଯୁଦ୍ଧ କରି ନାହାନ୍ତି ବା ତୁମମାନଙ୍କୁ ତୁମ ଘରୁ ବାହାର କରିନାହାନ୍ତି, ସେମାନଙ୍କର କଲ୍ୟାଣ କରିବାକୁ ବା ସେମାନଙ୍କ ସହ ଉତ୍ତମ ବ୍ୟବହାର କରିବାକୁ ଅଲ୍ଲାହ ତୁମକୁ ବାରଣ କରୁନାହାନ୍ତି । ଅଲ୍ଲାହ ନ୍ୟାୟପରାୟଣ ଲୋକଙ୍କୁ ପ୍ରେମ କରନ୍ତି । ଅଲ୍ଲାହ ତୁମମାନଙ୍କୁ କେବଳ ସେହିମାନଙ୍କ ସହ ବନ୍ଧୁତା କରିବାପାଇଁ ବାରଣ କରୁଛନ୍ତି ଯେଉଁମାନେ ତୁମ ସହିତ ଧର୍ମ ବିଷୟରେ ଯୁଦ୍ଧ କଲେ ଏବଂ ତୁମକୁ ତୁମ ଘରୁ ବାହାର କରିଦେଲେ ଏବଂ ବାହାର କରିବାରେ ସାହାଯ୍ୟ କଲେ।" (କୁରଆନ-୬୦/୮)

## ଜିହାଦର ସର୍ତ୍ତ

ଧର୍ମଯୁଦ୍ଧ ଏକ ଧର୍ମାଚାର । ଏହାର ଅନେକ ସର୍ତ୍ତ ଅଛି । ଏହା କେବଳ ଈଶ୍ୱରଙ୍କ ପ୍ରସନ୍ନତା ପାଇଁ ଓ ତାଙ୍କ ବିଧି ଅନୁଯାୟୀ ହୁଏ । କୌଣସି ବ୍ୟକ୍ତି,

ଗୋଷ୍ଠୀ ବା ଶାସକର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଆକ୍ରମଣ ବା ରାଜ୍ୟ, ଧନସମ୍ପତ୍ତି ବା କ୍ଷମତା ପାଇଁ ରକ୍ତପାତ ଜିହାଦ ନୁହେଁ । ଶାନ୍ତିର ଉଦ୍ୟମ ନିମନ୍ତେ ଅସ୍ତ୍ର ପ୍ରୟୋଗ ଅନ୍ତିମ ଉପାୟ । ଯୁଦ୍ଧ ପୂର୍ବରୁ ସନ୍ଧି ପାଇଁ ପ୍ରୟାସ ଫଳବତୀ ନ ହେଲେ, ଯୁଦ୍ଧ ଅନିବାର୍ଯ୍ୟ । ଧର୍ମଯୁଦ୍ଧ କେବଳ ଶାସକ ବା ଇମାମଙ୍କର ଅଧିକାର । ଏହା କୌଣସି ମୁସଲମାନର ବ୍ୟକ୍ତିଗତ ଅଧିକାର ନୁହେଁ । ଜିହାଦରେ ସର୍ତ୍ତ ରହିଛି ଯେ ସାଧାରଣ ନାଗରିକ, ମହିଳା, ଶିଶୁ, ବୃଦ୍ଧ, ରୋଗୀଙ୍କୁ ହତ୍ୟା କରାଯିବ ନାହିଁ । ସାଧୁସନ୍ଥମାନଙ୍କୁ କଷ୍ଟ ଦିଆଯିବ ନାହିଁ ବା ସେମାନଙ୍କ ଉପାସନାପୀଠ ନଷ୍ଟ କରାଯିବ ନାହିଁ । ଗୃହପାଳିତ ପଶୁଙ୍କୁ ହତ୍ୟା କରାଯିବ ନାହିଁ । ଫଳ ଧରିଥିବା ଗଛ ବା ଫସଲ ନଷ୍ଟ କରାଯିବ ନାହିଁ । ନିହତ ଶତ୍ରୁର ଶବ ପ୍ରତି ଅସମ୍ମାନ ପ୍ରଦର୍ଶନ କରାଯିବ ନାହିଁ ବା ଶବର ଅଙ୍ଗପ୍ରତ୍ୟଙ୍ଗ କଟାଯିବ ନାହିଁ। ଯୁଦ୍ଧବନ୍ଦୀଙ୍କ ସହ ମଧ୍ୟ ଉତ୍ତମ ବ୍ୟବହାର କରାଯିବା ଉଚିତ । ଶତ୍ରୁପକ୍ଷ ସନ୍ଧିପ୍ରସ୍ତାବ ଦେଲେ ଯୁଦ୍ଧ ସଙ୍ଗେ ସଙ୍ଗେ ବନ୍ଦ କରାଯିବା ବିଧେୟ । ଅନାବଶ୍ୟକ ରକ୍ତପାତ ଏଡ଼ାଇବାକୁ ଯଥାସାଧ୍ୟ ଉଦ୍ୟମ କରାଯିବା ଉଚିତ ।



# ଈଶ୍ୱରଦୂତଙ୍କ ଯୁଦ୍ଧର କାରଣ

ମହାମାନ୍ୟ ମୁହମ୍ମଦଙ୍କ ସମ୍ପୂର୍ଣ୍ଣ ଜୀବନ ସଂଘର୍ଷମୟ ଥିଲା । ଚାରିଆଡ଼େ ଶତ୍ରୁ ଘେରି ରହିଥିବାରୁ ତାଙ୍କୁ ଅନେକ ଯୁଦ୍ଧ କରିବାକୁ ପଡିଥିଲା । ଆସନ୍ତୁ ଦେଖିବା ଯେ ସେହି ଯୁଦ୍ଧଗୁଡ଼ିକର କାରଣ କ'ଣ ଥିଲା । ମହାମାନ୍ୟ ଈଶ୍ୱରଦୂତ ଅତ୍ୟାଚାର କରିଥିଲେ ବା ଅତ୍ୟାଚାର ବିରୋଧରେ ସଂଘର୍ଷ କରିଥିଲେ ? କ'ଣ ଏହି ଯୁଦ୍ଧଗୁଡ଼ିକର ଲକ୍ଷ୍ୟ ବଳପ୍ରୟୋଗ ଦ୍ୱାରା ଧର୍ମାନ୍ତରୀକରଣ ଥିଲା ?

**ଧର୍ମପ୍ରଚାର**

ଖ୍ରୀ.ଅ. ୬୧୦ରେ ହିରା ଗୁମ୍ଫାରେ ଧ୍ୟାନମଗ୍ନ ଥିବା ସମୟରେ ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ପ୍ରଥମ ଦୈବବାଣୀ ହେଲା । ୬୧୩ରେ ସେ ଇସଲାମ ଧର୍ମର ପ୍ରଚାର ଆରମ୍ଭ କଲେ । 'ଇସଲାମ'ର ଶାବ୍ଦିକ ଅର୍ଥ 'ସମର୍ପଣ' ବା 'ଈଶ୍ୱରଶରଣ' ।

'ଈଶ୍ୱରଶରଣ' ଏକ ଆଦିସ୍ରୋତ ଯାହା ବହୁ ପ୍ରାଚୀନକାଳରୁ ରହିଛି । ଇସଲାମ ବିଶୁଦ୍ଧ ଏକେଶ୍ୱରବାଦର ପ୍ରଚାରକ । 'ଲା-ଇଲାହା ଇଲ୍-ଲଲ୍ଲାହ୍' ଇସଲାମର ମୂଳମନ୍ତ୍ର । ବେଦାନ୍ତର ବ୍ରହ୍ମସୂତ୍ର **"ଏକମ୍ ବ୍ରହ୍ମ ଦ୍ୱିତୀୟୋ ନାସ୍ତି'**ର ଏହା ଆରବୀ ରୂପାନ୍ତର । ମଣିଷର ଆତ୍ମସମର୍ପଣ ବା ଆତ୍ମନିବେଦନକୁ ଆରବୀରେ ଇସଲାମ କୁହାଯାଏ । ଯିଏ ଈଶ୍ୱରଙ୍କ ଶରଣ ନିଏ ଏବଂ ଯିଏ ସବୁକିଛି ତାଙ୍କୁ ସମର୍ପି ଦିଏ, ତାକୁ ହିଁ କୁରଆନ ଭାଷାରେ 'ମୁସଲିମ୍' କୁହାଯାଏ ।

ଇସଲାମ ଏକ ସନାତନ ଧର୍ମଧାରା । ଏକ ଈଶ୍ୱରଙ୍କର ଉପାସନା କରିବା, ସର୍ବଦା ଅନ୍ୟର ହିତ କରିବା, ସମାଜରେ କାହାରି କୌଣସି ଅନିଷ୍ଟ ନ କରିବା ଏବଂ ନିଜକୁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ ମନେକରି ତାଙ୍କ ପ୍ରତିନିଧିଙ୍କ ଉପଦେଶ ଅନୁଯାୟୀ ଶୃଙ୍ଖଳିତ ଜୀବନଯାପନ କରିବା ହେଉଛି ଇସଲାମର ମୌଳିକ ସିଦ୍ଧାନ୍ତ। ଧର୍ମର ପ୍ରାୟ ପ୍ରାୟ ତିନି-ଚତୁର୍ଥାଂଶ ମାନବାଧିକାର ସମ୍ବନ୍ଧୀୟ ନୀତିନିୟମ । ଈଶ୍ୱରଙ୍କର ଲକ୍ଷାଧିକ ପ୍ରତିନିଧି ଏହି ଧର୍ମର ପ୍ରଚାର କରିଛନ୍ତି । ଏହି ଈଶ୍ୱରଦୂତଗଣ ବିଶ୍ୱର ପ୍ରତ୍ୟେକ ସଂପ୍ରଦାୟର ଲୋକଙ୍କୁ ସେମାନଙ୍କ ନିଜ ମାତୃଭାଷାରେ ଇସଲାମର ବାର୍ତ୍ତା ଦେଇଛନ୍ତି ବୋଲି କୁରଆନ କହେ । ମହାମାନ୍ୟ ମୁହମ୍ମଦ ଇସଲାମର ପ୍ରତିଷ୍ଠାତା ନୁହନ୍ତି, ବରଂ ସେ ଏହାର ପୁନଃସ୍ଥାପକ ।

ତତ୍କାଳୀନ ଆରବ ସମାଜ କୁସଂସ୍କାରପୂର୍ଣ୍ଣ ଥିଲା । ଅନ୍ୟାୟ ଓ ଅଧର୍ମ ସୀମା ଲଂଘନ କରିଥିଲା । ହତ୍ୟା, ଲୁଣ୍ଠନ, ଶୋଷଣ ଓ ବ୍ୟଭିଚାର ଆଦି ସବୁପ୍ରକାର ଅନ୍ୟାୟ-ଅତ୍ୟାଚାର ହେଉଥିଲା । ସଂପ୍ରଦାୟଗୁଡିକ ମଧ୍ୟରେ ନିୟମିତ ଯୁଦ୍ଧ ଓ ରକ୍ତପାତ ଲାଗି ରହୁଥିଲା । ଝିଅଟିଏ ଜନ୍ମ ହେଲେ ତାକୁ ଜିଅନ୍ତା ମାଟିରେ ପୋତି ଦିଆଯାଉଥିଲା । ଦୁର୍ବଳର ଅଧିକାର ସବଳ ଛଡ଼ାଇ ନେଉଥିଲା । ଚୋରି, ଡକାୟତି, ମଦ୍ୟପାନ ଓ ଜୁଆଖେଳ ଆଦି ଥିଲା ସମାଜର ସାଧାରଣ ଘଟଣା । ଦାସତ୍ୱ ପ୍ରଥାର ପ୍ରଚଳନ ଥିଲା ଏବଂ ମଣିଷ ମଣିଷ ମଧ୍ୟରେ ଉଚ୍ଚ-ନୀଚର ବିରାଟ ପ୍ରାଚୀର ରହିଥିଲା । ଲୋକେ ମହିଳାଙ୍କୁ ନାନାପ୍ରକାର ନିର୍ଯ୍ୟାତନା ଦେଉଥିଲେ । ବିଗ୍ରହ ସମ୍ମୁଖରେ ନରବଳୀ ଦିଆଯାଉଥିଲା । ମାନବାଧିକାରଗୁଡିକର ସୁରକ୍ଷା ପାଇଁ କୌଣସି ଦୃଢ଼ ବ୍ୟବସ୍ଥା ନଥିଲା । ମହାମାନ୍ୟ ଈଶ୍ୱରଦୂତ ସମାଜରେ ସଂସ୍କାର ଆଣିବାର ପ୍ରଯତ୍ନ କଲେ । ସେ ନିରାକାରବାଦର ପ୍ରଚାର କରିବା ସହିତ ସମାଜକୁ ସତ୍ୟ ଓ ସଦାଚାରର ଉପଦେଶ

ଦେଲେ । ହତ୍ୟା, ଲୁଣ୍ଠନ, ଶୋଷଣ, ବ୍ୟଭିଚାର ଆଦି କୁକର୍ମଗୁଡିକ ତ୍ୟାଗ କରି ନ୍ୟାୟ ଓ ନୈତିକତାର ମାର୍ଗ ଅନୁସରଣ କରିବାକୁ ଅନୁରୋଧ କଲେ । ମଣିଷ ନିଜର ପ୍ରତ୍ୟେକ କର୍ମ ପାଇଁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ । ତେଣୁ, କର୍ମ ଅନୁସାରେ ମଣିଷ ପରଲୋକରେ ସ୍ୱର୍ଗ ବା ନର୍କ ଅବଶ୍ୟ ଭୋଗ କରିବ ବୋଲି ସେ ଲୋକଙ୍କୁ ସାବଧାନ କଲେ ।

## ଅତ୍ୟାଚାରର ଆରମ୍ଭ

ମହାମାନ୍ୟ ଈଶ୍ୱରଦୂତଙ୍କ ନୀତିଶିକ୍ଷାଗୁଡିକ ତତ୍କାଳୀନ ସମାଜର ପ୍ରଚଳିତ ପରମ୍ପରାକୁ ବିରୋଧ କରୁଥିଲା । ମକ୍କାବାସୀ କୌଣସି ସଂସ୍କାର ଚାହୁଁ ନଥିଲେ । ଏହି କାରଣରୁ ମହାମାନ୍ୟ ମୁହମ୍ମଦଙ୍କୁ ପ୍ରଥମେ ତାଙ୍କ ନିଜର କୁରୈଶ ସଂପ୍ରଦାୟ ବିରୋଧ କଲା । ଏହି ବିରୋଧ ଧିରେ ଧିରେ ଅତ୍ୟାଚାରର ରୂପ ନେଇଥିଲା । ମହାମାନ୍ୟ ଈଶ୍ୱରଦୂତଙ୍କ ସମର୍ଥକମାନଙ୍କୁ ଗାଳି ମାଡ଼ ଦିଆଗଲା, ଲୁହା ଶିକୁଳିରେ ବାନ୍ଧି ଚାବୁକ ପ୍ରହାର କରାଗଲା, ଗରମ ଲୁହାର ଚେଙ୍କ ଦିଆଗଲା, ପ୍ରଚଣ୍ଡ ଖରାରେ ଉତ୍ତପ୍ତ ବାଲିରେ ଶୁଆଇ ସେମାନଙ୍କ ଛାତିରେ ଓଜନିଆ ପଥର ଖଣ୍ଡ ରଖିଦିଆଗଲା ଏବଂ କେତେକଙ୍କୁ ନୃଶଂସ ଭାବରେ ହତ୍ୟା ମଧ୍ୟ କରାଗଲା । ସେହିପରି କୁରୈଶମାନେ ଈଶ୍ୱରଦୂତଙ୍କ ପ୍ରତି ମଧ୍ୟ ଭୀଷଣ ଦୁର୍ବ୍ୟବହାର କଲେ । ତାଙ୍କୁ ମାଡ଼ ମାରି ରକ୍ତାକ୍ତ କଲେ, ତାଙ୍କ ଯିବା ବାଟରେ କଣ୍ଟା ବିଛାଇଲେ, ଟେକା ପଥର ମାରିଲେ, ସେ ପ୍ରାର୍ଥନା କରୁଥିବାବେଳେ ତାଙ୍କ ଉପରେ ମଳା ଓଟର ଦୁର୍ଗନ୍ଧଯୁକ୍ତ ଅନ୍ତବୁଜୁଳା ପକାଇଲେ ଏବଂ ବିଭିନ୍ନ ପ୍ରକାର ଶାରୀରିକ ଓ ମାନସିକ ନିର୍ଯ୍ୟାତନା ଦେଲେ ।

## ଆବିସିନିୟାରେ ଶରଣ (ଖ୍ରୀ.ଅ. ୬୧୫)

ଅତ୍ୟାଚାରରେ ଅତିଷ୍ଠ ହୋଇ ଖ୍ରୀ.ଅ. ୬୧୫ରୁ ୬୧୬ ମଧ୍ୟରେ ପ୍ରାୟ ଶହେ ଜଣ ମୁସଲମାନ ଅବିସିନିୟା ପଳାୟନ କଲେ । କୁରୈଶମାନେ ତଥାପି ସେମାନଙ୍କର ପିଛା ଛାଡିଲେ ନାହିଁ । ସେମାନେ ଆବିସିନିୟାର ଶାସକଙ୍କ ନିକଟକୁ ଗୋଟିଏ ପ୍ରତିନିଧିଦଳ ପଠାଇ ଅନୁରୋଧ କଲେ ଯେ ଆବିସିନିୟାରେ ଶରଣ ନେଇଥିବା କୁରୈଶ ବିଦ୍ରୋହୀ ମୁସଲମାନଙ୍କୁ ସେମାନଙ୍କୁ ହସ୍ତାନ୍ତର କରିଦିଆଯାଉ । ଆବିସିନିୟାର ଖ୍ରୀଷ୍ଟିୟାନ ରାଜା ନଜାଶୀ ମୁସଲମାନ ଶରଣାର୍ଥୀମାନଙ୍କୁ ହସ୍ତାନ୍ତର

କରିବାକୁ ମନା କଲେ । ତେଣୁ, ମୁସଲମାନ ଶରଣାର୍ଥୀମାନେ ସେଠାରେ ନିରାପଦରେ ରହିଲେ ।

**ସାମାଜିକ ବାସନ୍ଦ (ଖ୍ରୀ.ଅ. ୬୧୭)**

ଏଥିରେ ବିଫଳ ହେବାପରେ କୁରୈଶମାନଙ୍କର ମକ୍କାର ମୁସଲମାନଙ୍କ ପ୍ରତି ଅତ୍ୟାଚାର ବଢିଲା । ଖ୍ରୀ.ଅ. ୬୧୭ରେ ମୁସଲମାନମାନଙ୍କୁ ସାମାଜିକ ବାସନ୍ଦ କରାଗଲା । ସେମାନେ ମକ୍କା ସହର ବାହାରେ ଥିବା ଏକ ଘାଟିରେ ଆଶ୍ରୟ ନେଲେ । ସେମାନଙ୍କ ସହ ସବୁ ପ୍ରକାର ସମ୍ପର୍କ ଛିନ୍ନ କରିବାକୁ ଆଦେଶନାମା ଜାରି ହେଲା । ସେମାନଙ୍କ ସହ ସହଯୋଗ ଓ ମିଳାମିଶା ଉପରେ ପ୍ରତିବନ୍ଧ ଲଗାଇ ଦିଆଗଲା ଏବଂ ସେମାନଙ୍କୁ କୁହାଗଲା ଯେ ମହାମାନ୍ୟ ମୁହମ୍ମଦଙ୍କୁ ହସ୍ତାନ୍ତର ନ କରିବା ପର୍ଯ୍ୟନ୍ତ ବାସନ୍ଦ ବ୍ୟବସ୍ଥା ବଳବତ୍ତର ରହିବ । ଏହି ବାସନ୍ଦ ବ୍ୟବସ୍ଥା ୩ ବର୍ଷ ରହିଥିଲା ଏବଂ ଏକ ଦୀର୍ଘ ସମୟ ପରିବାରଗୁଡ଼ିକ ପିଲାଛୁଆଙ୍କୁ ଧରି ଭୋକ ଉପାସରେ ଅକଥନୀୟ ଦୁର୍ଦ୍ଦଶା ଭୋଗିଥିଲେ । ଏହା ମାନବ ଇତିହାସର ଏକ କଳଙ୍କମୟ ଅଧ୍ୟାୟ ।

**ହତ୍ୟାର ଷଡ଼ଯନ୍ତ୍ର (ଖ୍ରୀ.ଅ. ୬୨୨)**

ଏହା ମଧ୍ୟରେ ମଦିନାର ଇସଲାମ ଗ୍ରହଣ କରିଥିବା ପ୍ରାୟ ୭୦ ବା ୭୨ ଜଣ ଲୋକ ମହାମାନ୍ୟ ଈଶ୍ୱରଦୂତଙ୍କୁ ମକ୍କାରେ ସାକ୍ଷାତ କରି ମୁସଲମାନମାନଙ୍କୁ ମଦିନା ଚାଲିଆସିବା ପାଇଁ ନିମନ୍ତ୍ରଣ କଲେ ଏବଂ ସେମାନଙ୍କୁ ସବୁପ୍ରକାର ସୁରକ୍ଷା ଯୋଗାଇ ଦେବାପାଇଁ ଦୃଢ଼ ପ୍ରତିଶ୍ରୁତି ଦେଲେ । ତେଣୁ, ଅତ୍ୟାଚାର ଦ୍ୱାରା ଅତିଷ୍ଠ ହୋଇପଡ଼ିଥିବା ମୁସଲମାନ ଧୀରେ ଧୀରେ ନିଜ ଜନ୍ମଭୂମି ଛାଡି ମଦିନା ଯିବା ଆରମ୍ଭ କଲେ । ଯେତେବେଳେ କୁରୈଶମାନେ ଦେଖିଲେ ଯେ, ମୁସଲମାନମାନେ ମଦିନା ପଳାୟନ କରୁଛନ୍ତି, ମହାମାନ୍ୟ ମୁହମ୍ମଦଙ୍କୁ ସୁଯୋଗ ନଦେବା ପାଇଁ ସେମାନେ ଏକ ଜଘନ୍ୟ ଷଡଯନ୍ତ୍ର ରଚନା କଲେ । ଏଥିପାଇଁ ଗୋଟିଏ ସ୍ୱତନ୍ତ୍ର ସଭା ଡକାଗଲା। ପ୍ରତ୍ୟେକ ଗୋଷ୍ଠୀର ପ୍ରତିନିଧି ସେଥିରେ ଭାଗ ନେଇଥିଲେ । ଅନେକ ଆଲୋଚନା ପରେ ଶେଷରେ ମହାମାନ୍ୟ ଈଶ୍ୱରଦୂତଙ୍କୁ ହତ୍ୟା କରିବା ପାଇଁ ଗୋଟିଏ କମିଟି ଗଠନ କରାଗଲା ଏବଂ ସେଥିରେ ତାଙ୍କୁ ସଂଘବଦ୍ଧ ଭାବରେ

ଆକ୍ରମଣ କରିବାର ଯୋଜନା ଚୂଡ଼ାନ୍ତ ହେଲା । କିନ୍ତୁ ଈଶ୍ୱରଙ୍କ କୃପାରୁ ମହାମାନ୍ୟ ମୁହମ୍ମଦ ମକ୍କାରୁ ବାହାରିଯିବାରେ ସମର୍ଥ ହେଲେ ।

## ମଦିନା ନିର୍ବାସନ (ଖ୍ରୀ.ଅ. ୬୨୨)

ଖ୍ରୀ.ଅ. ୬୨୨ ସେପ୍ଟେମ୍ବର ମାସରେ ମହାମାନ୍ୟ ଈଶ୍ୱରଦୂତ ବନ୍ଧୁ ହଜରତ ଅବୁବକରଙ୍କୁ ସଙ୍ଗରେ ଧରି ଗୁପ୍ତରେ ମଦିନା ପ୍ରସ୍ଥାନ କଲେ । ଏହି ଐତିହାସିକ ଯାତ୍ରାକୁ ହିଜ୍‌ରା କୁହାଯାଏ । ଏହି ବର୍ଷଠାରୁ ଇସଲାମୀୟ କ୍ୟାଲେଣ୍ଡର ଆରମ୍ଭ ହୋଇଛି । ମଦିନା ଯିବା ବାଟରେ ସେମାନଙ୍କୁ ୩ ଦିନ ଗୋଟିଏ ଗୁମ୍ଫାରେ ଆଶ୍ରୟ ନେବାକୁ ପଡିଲା । ଶେଷରେ ସେମାନେ ନିରାପଦରେ ମଦିନାରେ ପହଞ୍ଚିଗଲେ । ମଦିନାରେ ମୁସଲମାନଙ୍କ ବ୍ୟତୀତ ୟିହୁଦୀ ଓ ଖ୍ରୀଷ୍ଟିୟାନ ସଂପ୍ରଦାୟର ଲୋକ ମଧ୍ୟ ବସବାସ କରୁଥିଲେ । ତେଣୁ, ମହାମାନ୍ୟ ଈଶ୍ୱରଦୂତ ମଦିନାବାସୀ ମୁସଲିମ ଓ ଅଣମୁସଲିମ ସଂପ୍ରଦାୟଗୁଡ଼ିକ ସହିତ ଏକ ଚୁକ୍ତିପତ୍ର ସ୍ୱାକ୍ଷର କଲେ । ଏହି ଚୁକ୍ତିପତ୍ରର ମୁଖ୍ୟ ବିଷୟବସ୍ତୁ ଥିଲା ଯେ ସମସ୍ତେ ପରସ୍ପର ସହ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରଖିବେ, କେହି କାହା ଧର୍ମ ବ୍ୟାପାରରେ ହସ୍ତକ୍ଷେପ କରିବେ ନାହିଁ, ଯୁଦ୍ଧ ସମୟରେ ସେମାନେ ପରସ୍ପରକୁ ସାହାଯ୍ୟ କରିବେ ଏବଂ ବାହ୍ୟ ଆକ୍ରମଣର ମିଳିତ ଭାବରେ ମୁକାବିଲା କରିବେ । ଏହି ଐତିହାସିକ ରାଜିନାମା ଇସଲାମ ଧର୍ମର ସାମ୍ପ୍ରଦାୟିକ ସୌହାର୍ଦ୍ଦ୍ୟ, ରାଷ୍ଟ୍ରୀୟ ଏକତା ଓ ଧର୍ମନିରପେକ୍ଷତାର ପ୍ରତୀକ ।

## ବଦର ଯୁଦ୍ଧ (ଖ୍ରୀ.ଅ. ୬୨୪)

ପିଲାଛୁଆ, ଘରଦ୍ୱାର ଓ ସମ୍ପତ୍ତିବାଡ଼ି ଛାଡି ଜୀବନ ବଞ୍ଚାଇବା ପାଇଁ ଅନ୍ୟ ଗୋଟିଏ ରାଜ୍ୟରେ ଆଶ୍ରୟ ନେଇଥିବା ମୁସଲମାନ ଅତି ଦୟନୀୟ ଅବସ୍ଥାରେ ଥିଲେ । ସେମାନେ ଘୋର ଦାରିଦ୍ର୍ୟରେ କାଳାତିପାତ କରୁଥିଲେ । ଠିକ୍ ମଦିନା ଯିବାର ଦ୍ୱିତୀୟ ବର୍ଷ ଖ୍ରୀ.ଅ. ୬୨୪ରେ ମହାମାନ୍ୟ ମୁହମ୍ମଦ ସୂଚନା ପାଇଲେ ଯେ କୁରୈଶମାନେ ମଦିନା ଆକ୍ରମଣ କରିବାକୁ ମକ୍କାରୁ ବାହାରି ପଡିଛନ୍ତି ଏବଂ ସେମାନଙ୍କ ମଧ୍ୟରେ କୁରେଶର ଅନେକ ବୀର ଯୋଦ୍ଧା ଅଛନ୍ତି । ଏହି ଖବର ମୁସଲମାନମାନଙ୍କ ପାଇଁ ଚିନ୍ତାର କାରଣ ଥିଲା । ସେମାନେ ସଂଖ୍ୟାରେ ଏତେ ଅଳ୍ପ ଏବଂ ଆର୍ଥିକ ରୂପେ ଏତେ ଦୁର୍ବଳ ଥିଲେ ଯେ ହଠାତ୍ ଶକ୍ତିଶାଳୀ

କୁରୈଶମାନଙ୍କ ସମ୍ମୁଖୀନ ହେବା ସେମାନଙ୍କ କଳ୍ପନା ବାହାରେ ଥିଲା । ସେମାନଙ୍କ ପାଖରେ ନା ସୈନ୍ୟବଳ ଥିଲା, ନା ଅସ୍ତ୍ରଶସ୍ତ୍ର ଥିଲା ନା ବାହନ ଥିଲା । ଏଭଳି ଅବସ୍ଥାରେ ମହାମାନ୍ୟ ଈଶ୍ୱରଦୂତ ନିଜ ସାଥିମାନଙ୍କ ସହ ବିଚାରବିମର୍ଶ କଲେ । ଶେଷରେ ସେମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାରୁ, ସେ ଶତ୍ରୁର ସମ୍ମୁଖୀନ ହେବାପାଇଁ ବାହାରିଲେ । ଶତ୍ରୁସୈନ୍ୟ ମକ୍କାରୁ ୨୦୯ ମାଇଲ ପଥ ଅତିକ୍ରମ କରି ବଦର୍ ନାମକ ଏକ ସ୍ଥାନ ପର୍ଯ୍ୟନ୍ତ ଆସି ସାରିଥିଲେ । ବଦର୍ ମଦିନାରୁ ମାତ୍ର ୭୩ ମାଇଲ ଦୂରରେ ଅବସ୍ଥିତ ।

ମୁସଲମାନମାନଙ୍କ ସୈନ୍ୟ ସଂଖ୍ୟା ମାତ୍ର ୩୧୩ । ସେମାନଙ୍କ ମଧ୍ୟରୁ ପ୍ରାୟ ଦୁଇ ତୃତୀୟାଂଶ ମଦିନାର ଅଧିବସୀ । ସଙ୍ଗରେ ଥିଲା ଦୁଇଟି ଅଶ୍ୱ ଓ ୭୦ଟି ଓଟ । ପ୍ରତି ଓଟରେ ତିନି ଚାରିଜଣ ଲେଖାଏଁ ଲୋକ ବସିଥିଲେ । ଅନ୍ୟପକ୍ଷରେ ଶତ୍ରୁପକ୍ଷର ପ୍ରାୟ ଏକ ହଜାର ସଶସ୍ତ୍ର ଲୋକ ଥିଲେ । ସେମାନଙ୍କ ମଧ୍ୟରେ ୭୦୦ ଓଟାରୋହୀ ଏବଂ ୨୦୦ ଅଶ୍ୱାରୋହୀ ଥିଲେ । ବଦର ଠାରେ ଦୁଇପକ୍ଷ ମୁହାଁମୁହିଁ ହେଲେ । ମହାଭାରତ ଯୁଦ୍ଧ ପରି ଏଥିରେ ଉଭୟ ପକ୍ଷରୁ ପରସ୍ପରଙ୍କ ଆତ୍ମୀୟ ସ୍ୱଜନମାନେ ଯୁଦ୍ଧ କରିବା ପାଇଁ ଆସିଥିଲେ । ଏପରିକି ଶତ୍ରୁପକ୍ଷ ସେନାରେ ମହାମାନ୍ୟ ମୁହମ୍ମଦଙ୍କ ନିଜ ଜ୍ୱାଇଁ ଅବୁଲ୍ ଆସ୍ ମଧ୍ୟ ଥିଲେ ଯିଏ ଯୁଦ୍ଧରେ ମୁସଲମାନମାନଙ୍କ ଦ୍ୱାରା ବନ୍ଦୀ ମଧ୍ୟ ହୋଇଥିଲେ । ପାଣ୍ଡବମାନଙ୍କ ଯୁଦ୍ଧ କୌରବମାନଙ୍କ ଅତ୍ୟାଚାରର ବିରୋଧରେ ଥିଲା ଏବଂ ମୁସଲମାନମାନଙ୍କ ଯୁଦ୍ଧ କୁରୈଶ ସମ୍ପ୍ରଦାୟର ଅତ୍ୟାଚାର ବିରୋଧରେ ଥିଲା । ସେ ପର୍ଯ୍ୟନ୍ତ ଚଉଦ ବର୍ଷକାଳ ଈଶ୍ୱରଦୂତ ଓ ତାଙ୍କ ସାଥିମାନେ ଅକଥନୀୟ ଅତ୍ୟାଚାର ସହି ଅହିଂସା ପଥରେ ରହିଥିଲେ । ବର୍ତ୍ତମାନ ଥିଲା ପ୍ରାଣରକ୍ଷା ଏବଂ ଧର୍ମରକ୍ଷାର ପ୍ରଶ୍ନ । ଦୀର୍ଘ ଚଉଦ ବର୍ଷ ପରେ ପ୍ରତିରକ୍ଷା ଉଦ୍ଦେଶ୍ୟରେ ସେମାନଙ୍କୁ ଅସ୍ତ୍ର ଧରିବାର ଅନୁମତି ଦିଆଗଲା । ପ୍ରଥମ ଥର ପାଇଁ ମୁସଲମାନମାନଙ୍କୁ ଅସ୍ତ୍ର ଧରିବାର ଅନୁମତି ଦେଇ କୁରଆନ କହିଲା—

> "ଯେଉଁମାନଙ୍କ ସହ ଯୁଦ୍ଧ କରାଯାଉଛି, ସେମାନଙ୍କୁ ମଧ୍ୟ (ଯୁଦ୍ଧ କରିବାର) ଅନୁମତି ଦିଆଯାଉଛି, କାରଣ ସେମାନଙ୍କ ପ୍ରତି ଅତ୍ୟାଚାର ହୋଇଛି ଏବଂ ଅଲ୍ଲାହ୍ ନିଶ୍ଚୟ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ସମର୍ଥ । ସେମାନଙ୍କୁ ଅନ୍ୟାୟରେ ସେମାନଙ୍କ ଘରୁ

ବାହାର କରିଦିଆଯାଇଛି । (ସେମାନେ କିଛି ଦୋଷ କରି ନ ଥିଲେ) ହଁ, ସେମାନେ (କେବଳ) ଏତିକି କହୁଛନ୍ତି ଯେ ଆମ ପ୍ରଭୁ ଅଲ୍ଲାହ ଅଟନ୍ତି ।" (କୁରଆନ-୨୨/୩୯)

ମହାଭାରତ ଯୁଦ୍ଧରେ ଶ୍ରୀକୃଷ୍ଣଙ୍କ ବାରମ୍ବାର ଉପଦେଶ ସତ୍ତ୍ୱେ ଅର୍ଜୁନ ନିଜ ସମ୍ପର୍କୀୟଙ୍କ ସହ ଯୁଦ୍ଧ କରିବା ପାଇଁ ଅନିଚ୍ଛୁକ ଥିଲେ । ସେ ଗାଣ୍ଡିବ ଥୋଇଦେଇ ବସି ପଡିଥିଲେ। ବିଷାଦଗ୍ରସ୍ତ ଅର୍ଜୁନଙ୍କୁ ଶ୍ରୀକୃଷ୍ଣ ବୁଝାଇ କହୁଛନ୍ତି—

"ହେ ପାର୍ଥ! କାତର ହୁଅ ନାହିଁ, ଏହା ତୁମ୍ଭର ଉପଯୁକ୍ତ ନୁହେଁ । ହେ ଶତ୍ରୁତାପନ ! ତୁଚ୍ଛ ହୃଦୟ ଦୁର୍ବଳତା ତ୍ୟାଗ କରି (ଯୁଦ୍ଧ ନିମିତ୍ତ) ଉଠ ।" (ଭଗବଦ୍ ଗୀତା ୨/୩)

ସେହିପରି କୁରଆନ ଯୁଦ୍ଧର ଅନୁମତି ଦେଲାପରେ କେତେକ ମୁସଲମାନ ମଧ୍ୟ ସେମାନଙ୍କ ସମ୍ପର୍କୀୟଙ୍କ ସହ ଯୁଦ୍ଧ କରିବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ । ସେମାନଙ୍କ ଅନିଚ୍ଛୁକତା ଦେଖି ମହାମାନ୍ୟ ଈଶ୍ୱରଦୂତଙ୍କ ପ୍ରତି ଦୈବବାଣୀ ହେଲା–

"ତୁମମାନଙ୍କୁ ଯୁଦ୍ଧର ଆଦେଶ ଦିଆଗଲା ଏବଂ ତୁମକୁ ଏହା ଭଲ ଲାଗୁନାହିଁ । ଯାହା ତୁମକୁ ଭଲ ଲାଗୁନାହିଁ, ସମ୍ଭବତଃ ତାହା ତୁମ ପାଇଁ ହିତକର ହୋଇପାରେ ଏବଂ ଯାହା ତୁମକୁ ଭଲ ଲାଗୁଛି, ତାହା ତୁମ ପାଇଁ ଭଲ ନ ହୋଇପାରେ, କିନ୍ତୁ ଅଲ୍ଲାହ ଜାଣନ୍ତି, ତୁମେ ଜାଣନାହିଁ । (କୁରଆନ-୨/୨୧୬)

ମହାଭାରତ ଯୁଦ୍ଧରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଯୁଦ୍ଧ ପାଇଁ ଉତ୍ସାହିତ କରିବାକୁ କହୁଛନ୍ତି–

ହତୋ ବା ପ୍ରାପ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍
ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତନିଶ୍ଚୟଃ ।

(ଭଗବଦ୍ ଗୀତା ୨/୩୭)

ଅର୍ଥାତ୍ ଯଦି ଯୁଦ୍ଧରେ ନିହତ ହୁଅ ତେବେ ତୁମେ ସ୍ୱର୍ଗକୁ ଯିବ, ଆଉ ଯଦି ଶତ୍ରୁମାନଙ୍କୁ ପରାସ୍ତ କରିପାର ତେବେ ପୃଥିବୀ ଭୋଗ କରିବ । ଅତଏବ ହେ କୁନ୍ତୀପୁତ୍ର ! ଯୁଦ୍ଧ କରିବାକୁ ନିଶ୍ଚୟ କରି ଉଠ । ଠିକ୍ ସେହିପରି କୁରଆନ ମୁସଲମାନମାନଙ୍କୁ ଯୁଦ୍ଧ ପାଇଁ ପ୍ରୋତ୍ସାହିତ କରି କହିଲା–

"ଯିଏ ଅଲ୍ଲାହଙ୍କ ପଥରେ ଯୁଦ୍ଧ କରେ, ସେ ନିହତ ହେଉ ବା ବିଜୟୀ ହେଉ, ଆମ୍ଭେ ତାକୁ ଖୁବ୍‌ଶୀଘ୍ର ଉତ୍ତମ ପ୍ରତିଫଳ ପ୍ରଦାନ କରିବୁ ।" (କୁରଆନ-୪/୭୪)

ବଦର ଯୁଦ୍ଧରେ ଶତ୍ରୁପକ୍ଷର ୭୦ ଜଣ ଲୋକ ନିହତ ହୋଇଥିବାବେଳେ ୭୦ଜଣ ବନ୍ଦୀ ହୋଇଥିଲେ ଏବଂ ୧୪ ଜଣ ମୁସଲମାନ ପ୍ରାଣ ହରାଇଥିଲେ । ଏଥିରେ ମୁସଲମାନମାନେ ବିଜୟ ଲାଭ କରିଥିଲେ ।

**ଉହଦ୍ ଯୁଦ୍ଧ (ଖ୍ରୀ.ଅ. ୬୨୫)**

ବଦର ଯୁଦ୍ଧରେ ହୋଇଥିବା ପରାଜୟର ପ୍ରତିଶୋଧ ନେବାପାଇଁ କୁରେଶ ଏହାର ପର ବର୍ଷ ଜାନୁୟାରୀ ୬୨୫ରେ ମଦିନା ଆକ୍ରମଣ କଲେ । ମଦିନାରେ ଥିବା ଉହଦ ନାମକ ପାହାଡ ନିକଟରେ ଏହି ଯୁଦ୍ଧ ହୋଇଥିଲା । ମୁସଲମାନଙ୍କ ତୁଳନାରେ ଶତ୍ରୁସେନା ଚାରିଗୁଣ ଅଧିକ ଥିଲେ । ୩୦୦୦ ଶତ୍ରୁସେନାଙ୍କ ମଧ୍ୟରେ ୨୦୦ ଅଶ୍ୱାରୋହୀ ଥିଲେ । ମୁସଲମାନଙ୍କ ସଂଖ୍ୟା ମାତ୍ର ୭୦୦ ଥିଲା ଏବଂ ସେମାନଙ୍କ ପାଖରେ ମାତ୍ର ଦୁଇଟି ଅଶ୍ୱ ଥିଲା । ଏହି ଯୁଦ୍ଧରେ ସ୍ୱୟଂ ମହାମାନ୍ୟ ଈଶ୍ୱରଦୂତ ଆହତ ହୋଇଥିଲେ । ମୁସଲମାନଙ୍କର ଅସାବଧାନତା ଯୋଗୁଁ ସେମାନଙ୍କୁ ବହୁ କ୍ଷୟକ୍ଷତି ସହିବାକୁ ପଡିଥିଲା, କିନ୍ତୁ ମଦିନା ସୁରକ୍ଷିତ ରିହିଲା ଏବଂ ଶତ୍ରୁ ସେମାନଙ୍କ ଲକ୍ଷ୍ୟ ହାସଲ ନ କରି ଫେରିଗଲେ ।

**ଖାଇ ଯୁଦ୍ଧ (ଖ୍ରୀ.ଅ. ୬୨୭)**

ଖ୍ରୀ.ଅ. ୬୨୭ରେ ୟିହୁଦୀମାନେ ଇସଲାମୀୟ ଶକ୍ତିକୁ ଧୂଳିସାତ କରିଦେବା ଉଦ୍ଦେଶ୍ୟରେ କୁରୈଶମାନଙ୍କ ସାହାଯ୍ୟ ଲୋଡିଲେ । କୁରୈଶ ଏବଂ ୟହୁଦୀ ଗୋଷ୍ଠୀ ୧୦,୦୦୦ ସୈନ୍ୟଙ୍କର ଏକ ମିଳିତ ବାହିନୀ ନେଇ ମଦିନା ଆକ୍ରମଣ ପାଇଁ ବାହାରିଲେ । ଏହାର ସୂଚନା ପାଇ ତୁରନ୍ତ ମୁସଲମାନମାନେ ପ୍ରତିରକ୍ଷା ପାଇଁ ସହର ବାହାରେ ଏକ ବିରାଟ ଖାଇ ଖୋଳିଥିଲେ । ଏଇଥିପାଇଁ ଏହାକୁ ଖନ୍ଦକ ବା ଖାଇଯୁଦ୍ଧ କୁହାଯାଏ । ଶତ୍ରୁସୈନ୍ୟ ଖାଇ ପାର କରିବାକୁ ସମର୍ଥ ହେଲେନାହିଁ । ତେଣୁ ସେମାନେ ମଦିନାକୁ ଚାରିପଟୁ ପ୍ରାୟ ୨୭ ଦିନ କାଳ ଅବରୋଧ କରି ରଖିଲେ । ମୁସଲମାନମାନେ ସହର ଭିତରେ ରହି କେବଳ ପ୍ରତିରୋଧ କଲେ ।

ସମ୍ମୁଖ ଯୁଦ୍ଧ ପାଇଁ ଶତ୍ରୁମାନଙ୍କୁ କୌଣସି ସୁଯୋଗ ମିଳିଲା ନାହିଁ । ତେଣୁ ବିଶେଷ ରକ୍ତପାତ ହୋଇ ନ ଥିଲା ଏବଂ ଯୁଦ୍ଧର ଫଳାଫଳ ମୁସଲମାନଙ୍କ ସପକ୍ଷରେ ଯାଇଥିଲା । ଏହି ଯୁଦ୍ଧରେ ୟିହୁଦୀ ଗୋଷ୍ଠୀଗୁଡ଼ିକ ମୁସଲମାନମାନଙ୍କ ସହ ବିଶ୍ୱାସଘାତକତା କଲେ । ସେମାନେ ମହାମାନ୍ୟ ମୁହମ୍ମଦଙ୍କ ସହ କରିଥିବା ଶାନ୍ତି ଓ ସହଯୋଗର ଚୁକ୍ତି ଭଙ୍ଗ କରି କୁରେଶ ସମ୍ପ୍ରଦାୟ ସହ ମିଶି ମୁସଲମାନଙ୍କ ଉପରେ ଆକ୍ରମଣ କରିଥିଲେ ।

## ହୁଦେବିୟା ଚୁକ୍ତି (ଖ୍ରୀ.ଅ. ୬୨୮)

ଦୀର୍ଘ ଛଅ ବର୍ଷ ବିତିଯାଇଥିଲା କିନ୍ତୁ ମୁସଲମାନମାନେ ମକ୍କାକୁ ତୀର୍ଥ ପାଇଁ ଯାଇପାରି ନ ଥିଲେ । ତେଣୁ ଖ୍ରୀ.ଅ. ୬୨୮ରେ ପ୍ରାୟ ୧୪୦୦ ମୁସଲମାନ ତୀର୍ଥ କରିବା ପାଇଁ ମକ୍କା ବାହାରିଲେ । ବାଟରେ ହୁଦେବିୟା ନାମକ ଏକ ସ୍ଥାନରେ କୁରେଶମାନେ ସେମାନଙ୍କୁ ଅଟକାଇଦେଲେ । ଅନେକ ତର୍କ ଆଲୋଚନା ପରେ ଉଭୟ ପକ୍ଷରୁ ଚୁକ୍ତିପତ୍ର ସ୍ୱାକ୍ଷରିତ ହେଲା ଯେ ମୁସଲମାନମାନେ ଏବର୍ଷ ମକ୍କାର ତୀର୍ଥ ନ କରି ଫେରିଯିବେ ଏବଂ ଆସନ୍ତା ବର୍ଷ କେବଳ ତିନିଦିନ ପାଇଁ ମକ୍କା ଆସିବେ, ସାଙ୍ଗରେ ଅସ୍ତ୍ରଶସ୍ତ୍ର ଆଣିବେ ନାହିଁ, ଉଭୟ ପକ୍ଷ ଦଶବର୍ଷ ଯୁଦ୍ଧ ବିରତି ପାଳନ କରିବେ, ଯିଏ ଯେଉଁ ପକ୍ଷରେ ଚାହିଁବ ରହିପାରିବ, ଯେଉଁ ଗୋଷ୍ଠୀ ଯେଉଁ ପକ୍ଷ ସହ ରହିବାକୁ ଚାହିଁବ, ତାକୁ ସେହି ପକ୍ଷର ଅଙ୍ଗ ରୂପେ ଗ୍ରହଣ କରାଯିବ, କୌଣସି ଗୋଷ୍ଠୀ ଉପରେ ଆକ୍ରମଣ ହେଲେ ତାହା ସଂପୃକ୍ତ ପକ୍ଷ ଉପରେ ଆକ୍ରମଣ ଭାବେ ଧରାଯିବ ଏବଂ କୁରେଶର କୌଣସି ବ୍ୟକ୍ତି ଇସଲାମ ଗ୍ରହଣ କରି ମଦିନା ଆସିଲେ ତାକୁ ଫେରାଇବାକୁ ହେବ କିନ୍ତୁ ଯଦି କୌଣସି ମୁସଲମାନ ଯାଇ କୁରେଶ ସହ ମିଶିଯାଏ ତେବେ ତାକୁ ଫେରସ୍ତ କରାଯିବ ନାହିଁ । ଏହି ଐତିହାସିକ ଚୁକ୍ତିନାମା ଖ୍ରୀ.ଅ. ୬୨୮ରେ ସ୍ୱାକ୍ଷରିତ ହୋଇଥିଲା । ମୁସଲମାନମାନେ ଆଉ ମକ୍କା ନ ଯାଇ ସେହିଠାରୁ ଫେରି ଆସିଲେ । ଏହି ଚୁକ୍ତି ସ୍ୱାକ୍ଷର ହେବାଦ୍ୱାରା ମୁସଲମାନ ନିଜକୁ ନିରାପଦ ମନେ କଲେ ଏବଂ ଏହା ସେମାନଙ୍କୁ ନିର୍ଭୟରେ ନିଜ ଧର୍ମର ପ୍ରଚାର ପାଇଁ ସୁଯୋଗ ଦେଲା । ଆରବ ଭୂଖଣ୍ଡର ଲୋକଙ୍କୁ ଇଚ୍ଛାମତେ ଧର୍ମ ଗ୍ରହଣ କରିବାର ସ୍ୱାଧୀନତା ମିଳିଲା ଏବଂ ମକ୍କାରେ ବାସ କରୁଥିବା ମୁସଲମାନମାନଙ୍କୁ ମଧ୍ୟ ନିର୍ଯ୍ୟାତନାରୁ ମୁକ୍ତି ମିଳିଲା । ଶାନ୍ତିପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇଯିବାରୁ

୬୨୮ରୁ ଚାରିବର୍ଷ ପ୍ରଚାର କାର୍ଯ୍ୟ ବହୁ ଦ୍ରୁତଗତିରେ ଆଗେଇ ଚାଲିଲା ଯାହା ଫଳରେ ଆରବ ଭୂଖଣ୍ଡର ଅଧିକାଂଶ ଲୋକେ ଇସଲାମ ଗ୍ରହଣ କରି ନେଇଥିଲେ ।

## ମୂତା ଯୁଦ୍ଧ (ଖ୍ରୀ.ଅ. ୬୨୯)

ଏହି ଯୁଦ୍ଧ ଇସଲାମ ଇତିହାସର ଏକ ଅସାଧାରଣ ଘଟଣା । ଖ୍ରୀ.ଅ. ୬୨୯ରେ ମହାମାନ୍ୟ ମୁହମ୍ମଦ ବସରାର ପ୍ରଶାସକ ନିକଟକୁ ନିଜ ଦୂତଙ୍କ ହାତରେ ଗୋଟିଏ ପତ୍ର ପଠାଇଥିଲେ। କିନ୍ତୁ ଦୂତ ବସରା ପହଞ୍ଚିବା ପୂର୍ବରୁ ମୂତା ନାମକ ଏକ ସ୍ଥାନରେ ରୋମୀୟ ପ୍ରଶାସକ ସେହି ଦୂତକୁ ହତ୍ୟା କରିଦେଲେ । କୌଣସି ରାଜଦୂତକୁ ହତ୍ୟା କରିବା ଅନ୍ୟାୟ । ଏହାରି ପରିଣାମ ସ୍ୱରୂପ ମୂତା ଅଭିଯାନ ହେଲା । ଏହାର ସୂଚନା ପାଇ ମହାମାନ୍ୟ ମୁହମ୍ମଦ ଉଦ୍ଧତ ରୋମୀୟ ପ୍ରଶାସକଙ୍କୁ ଶିକ୍ଷା ଦେବାପାଇଁ ୩,୦୦୦ ସୈନ୍ୟ ପଠାଇଲେ । ବାଟରେ ସେମାନଙ୍କୁ ସୂଚନା ମିଳିଲା ଯେ ଏକ ଲକ୍ଷ ରୋମାନ ସେନା ଏବଂ ସେମାନଙ୍କୁ ସମର୍ଥନ ଦେଉଥିବା ବିଭିନ୍ନ ଆରବ ଗୋଷ୍ଠୀଗୁଡ଼ିକର ଏକ ଲକ୍ଷ ସେନା ସେମାନଙ୍କ ସମ୍ମୁଖୀନ ହେବା ପାଇଁ ଆସୁଛନ୍ତି । ଏଭଳି ବିଶାଳ ସେନାର ସୂଚନା ପାଇ ମୁସଲମାନ ଚିନ୍ତାରେ ପଡିଲେ । କେତେକ ପ୍ରସ୍ତାବ ଦେଲେ ଯେ ମହାମାନ୍ୟ ଈଶ୍ୱରଦୂତଙ୍କୁ ଅଧିକ ସୈନ୍ୟ ପଠାଇବା ପାଇଁ ବା ସେନା ଫେରାଇନେବା ପାଇଁ ଅନୁରୋଧ କରାଯାଉ । କିନ୍ତୁ ଶେଷରେ ସେମାନେ ଶତ୍ରୁର ସମ୍ମୁଖୀନ ହେବାପାଇଁ ସ୍ଥିର କଲେ । ମୂତା ନାମକ ସ୍ଥାନରେ ମିଳିତ ବାହିନୀ ସହ ଘମାଘୋଟ ଯୁଦ୍ଧ ହେଲା । ଜଣକ ପରେ ଜଣେ ଏହିପରି ତିନିଜଣ ମୁସଲିମ ସେନାପତି ଶହୀଦ ହୋଇଗଲେ । ଶେଷରେ ଖାଲିଦ ବିନ ଓ୍ୱଲିଦ ସେନାପତିର ଦାୟିତ୍ୱ ଗ୍ରହଣ କଲେ । ସେ ଏଭଳି ରଣକୌଶଳ ଅବଲମ୍ବନ କଲେ ଯାହା ଶତ୍ରୁମାନଙ୍କ ମିଳିତ ବାହିନୀର ମନୋବଳ ଭାଙ୍ଗିଦେଲା । ସେମାନେ ରଣକ୍ଷେତ୍ର ଛାଡ଼ିଦେଲେ । ମାତ୍ର ତିନି ହଜାର ସୈନ୍ୟ ଦୁଇ ଲକ୍ଷ ସୈନ୍ୟଙ୍କ ସମ୍ମୁଖୀନ ହେବା ଏକ ଚମତ୍କାରିତା ଥିଲା । ମୁସଲମାନ ସୈନ୍ୟ ନିରାପଦରେ ମଦିନା ଫେରି ଆସିଥିଲେ ।

## ମକ୍କା ବିଜୟ (ଖ୍ରୀ.ଅ. ୬୩୦)

ହୁଦୈବିୟା ଚୁକ୍ତିର ମାତ୍ର ଦୁଇ ବର୍ଷ ମଧ୍ୟରେ କୁରେଶମାନେ ବିଶ୍ୱାସଘାତକତା କରି ଚୁକ୍ତି ଭାଙ୍ଗିଦେଲେ । ସେମାନେ ମୁସଲମାନଙ୍କ ଏକ ସହଯୋଗୀ ଗୋଷ୍ଠୀ

ଉପରେ ଆକ୍ରମଣ କରି କେତେଜଣଙ୍କୁ ହତ୍ୟା କରିଦେଲେ । ତେଣୁ ମୁସଲମାନ କୁରେଶଙ୍କ ସହ ଯୁଦ୍ଧ ଘୋଷଣା କଲେ । ସେମାନଙ୍କୁ ପ୍ରାୟଶ୍ଚିତ୍ତ କରିବାପାଇଁ ଚାରିମାସ ସମୟ ମଧ୍ୟ ଦିଆଗଲା । ତା'ପରେ ପ୍ରାୟ ୧୦,୦୦୦ ସଂଖ୍ୟାର ଏକ ବିଶାଳ ବାହିନୀ ମକ୍କା ଅଭିଯାନରେ ବାହାରିଲା । କୁରେଶମାନେ ଆତ୍ମସମର୍ପଣ କରିବାରୁ ବିନା ଯୁଦ୍ଧ ଓ ରକ୍ତପାତରେ ମକ୍କା ବିଜୟ ହେଲା । ମୁସଲମାନ ନିଜ ଜନ୍ମଭୂମିକୁ ଫେରିଥିଲେ।

## ହୁନୈନ ଯୁଦ୍ଧ (ଖ୍ରୀ.ଅ. ୬୩୦)

ମକ୍କା ବିଜୟ ପରେ ପରେ ହୱାଜିନ ନାମକ ଏକ ସମ୍ପ୍ରଦାୟ କେତେକ ବେଦୁଇନ ଗୋଷ୍ଠୀଙ୍କୁ ଏକତ୍ରିତ କରି ମହାମାନ୍ୟ ମୁହମ୍ମଦଙ୍କ ସହ ଯୁଦ୍ଧ କରିବା ପାଇଁ ବାହାରିଲେ । ମହାମାନ୍ୟ ଈଶ୍ୱରଦୂତଙ୍କୁ ଗୁପ୍ତଚର ମାଧ୍ୟମରେ ଏହାର ସୂଚନା ମିଳିଲା । ତେଣୁ ସେ ୧୨୦୦୦ ସୈନ୍ୟଙ୍କର ଏକ ବିଶାଳ ବାହିନୀ ନେଇ ଶତ୍ରୁମାନଙ୍କୁ ପ୍ରତିରୋଧ କରିବାପାଇଁ ବାହାରିଲେ । ଶତ୍ରୁସେନା ସହ ହୁନୈନ ନାମକ ସ୍ଥାନରେ ଯୁଦ୍ଧ ହେଲା । ଏହି ଯୁଦ୍ଧରେ ଶତ୍ରୁପକ୍ଷରୁ ପ୍ରଚଣ୍ଡ ଆକ୍ରମଣ ହୋଇଥିଲା; କିନ୍ତୁ ଶେଷରେ ସେମାନେ ପରାସ୍ତ ହୋଇଥିଲେ ।

## ତବୁକ ଯୁଦ୍ଧ (ଖ୍ରୀ.ଅ. ୬୩୧)

ପୁଣି ମହାମାନ୍ୟ ମୁହମ୍ମଦଙ୍କୁ ସୂଚନା ମିଳିଲା ଯେ ରୋମ ସମ୍ରାଟ ହର୍କ୍ୟୁଲେସ ଇସଲାମୀୟ ଶକ୍ତିକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ବିପୁଳ ସମରସଜ୍ଜା କରୁଛନ୍ତି । ତେଣୁ ମୁସଲମାନମାନେ ପୁଣି ନିଜର ସୁରକ୍ଷା ନେଇ ଚିନ୍ତିତ ହୋଇପଡିଲେ । ମହାମାନ୍ୟ ଈଶ୍ୱରଦୂତ ୩୦,୦୦୦ ସୈନ୍ୟ ନେଇ ରୋମାନ ସେନାକୁ ପ୍ରତିରୋଧ କରିବାପାଇଁ ତବୁକ ଅଭିମୁଖେ ଅଭିଯାନ ଆରମ୍ଭ କଲେ; କିନ୍ତୁ ସେଠାରେ ରୋମାନବାହିନୀ ସେମାନଙ୍କର ସମ୍ମୁଖୀନ ହେଲାନାହିଁ । ବୋଧହୁଏ ଏହା ଏକ ଗୁଜବ ଥିଲା । ତେଣୁ କିଛିଦିନ ସେମାନେ ସେଠାରେ ଶିବିର ପକାଇ ରହିଲେ ଏବଂ ତା'ପରେ ମଦିନା ଫେରିଆସିଲେ । କୌଣସି ଯୁଦ୍ଧ ହୋଇ ନ ଥିଲା । ଏହି ଯାତ୍ରା ମହାମାନ୍ୟ ଈଶ୍ୱରଦୂତଙ୍କର ଅନ୍ତିମ ଯୁଦ୍ଧଯାତ୍ରା ଥିଲା । ଖ୍ରୀ.ଅ. ୬୩୨ରେ ସେ ଇହଧାମ ତ୍ୟାଗ କରିଥିଲେ ।

ମୋଟାମୋଟି ଭାବରେ ଏହାହିଁ ହେଉଛି ମହାମାନ୍ୟ ଈଶ୍ୱରଦୂତଙ୍କ ଯୁଦ୍ଧର ଇତିହାସ । ଖ୍ରୀ.ଅ. ୬୨୪ ପର୍ଯ୍ୟନ୍ତ ୧୪ବର୍ଷ କାଳ ମହାମାନ୍ୟ ଈଶ୍ୱରଦୂତ ଯେଉଁ ଅତ୍ୟାଚାର ସହିଲେ ଏବଂ ଯେଉଁ ସଂଘର୍ଷ କଲେ ଇସ୍‌ଲାମ ଭାଷାରେ ତାହା 'ଜିହାଦ୍' ଥିଲା । ଏହାପରେ ମଧ୍ୟ ଯେଉଁ ସଂଘର୍ଷ ସେ ତରବାରୀ ଧରି କଲେ, ତାହା ମଧ୍ୟ ଜିହାଦ୍ ଥିଲା । ଅସ୍ତ୍ର ଧରିବା ପାଇଁ ସେ ବାଧ୍ୟ ହୋଇଥିଲେ ଏବଂ ତାଙ୍କର ସବୁ ଯୁଦ୍ଧ ପ୍ରତିରକ୍ଷା ଉଦ୍ଦେଶ୍ୟରେ ଥିଲା । ଅବଶ୍ୟ ବିଶ୍ୱାସଘାତକତା କରିଥିବା ଓ ଚୁକ୍ତି ଭଙ୍ଗ କରିଥିବା ଯୋଗୁଁ କେତେକ ୟିହୁଦୀ ଗୋଷ୍ଠୀଙ୍କ ଉପରେ ସାମରିକ କାର୍ଯ୍ୟାନୁଷ୍ଠାନ ହୋଇଥିଲା । କିନ୍ତୁ ଧର୍ମ ପ୍ରଚାର ପାଇଁ ସେ ଆଦୌ ବଳପ୍ରୟୋଗ କରିନାହାନ୍ତି । ତାଙ୍କ ଜୀବନର ବହୁ ଘଟଣାକୁ ପାଶ୍ଚାତ୍ୟ ଲେଖକମାନେ ହୀନ ଉଦ୍ଦେଶ୍ୟରେ ଅତିରଞ୍ଜିତ କରିଛନ୍ତି । ଜନ୍ ଡାଭେନପୋର୍ଟ ଏ ସମ୍ପର୍କରେ ମତ ଦିଅନ୍ତି—''ଯେଉଁ ଲେଖକମାନେ ନିଜର ଅନ୍ଧ ଆବେଗର ବଶବର୍ତ୍ତୀ ହୋଇ ଏକ ଈଶ୍ୱରଙ୍କ ଉପାସନାର ପୁନଃସ୍ଥାପକଙ୍କ ନିଷ୍କଳଙ୍କ ଛବି ପ୍ରତି ଆକ୍ରମଣ କରିଛନ୍ତି, ସେମାନେ ଯେ କେବଳ ଈଶ୍ୱର ଶିଖାଇଥିବା ବଦାନ୍ୟତାର ଭାବାବେଗ ଦ୍ୱାରା ଆଦୌ ପ୍ରଭାବିତ ହୋଇନାହାନ୍ତି ତାହାହିଁ ନୁହେଁ, ସେମାନେ ଉଚିତ ନ୍ୟାୟ କରିବାରେ ମଧ୍ୟ ଭୁଲ କରିଛନ୍ତି ।''(୧୪)

ଶତ୍ରୁମାନେ କେଉଁଠି ହେଲେ ତାଙ୍କୁ ଶାନ୍ତିରେ ରହିବାକୁ ଦେଇ ନଥିଲେ । ତାଙ୍କର ଦୋଷ ବା କ'ଣ ଥିଲା ? ଏକେଶ୍ୱରବାଦର ପ୍ରଚାର କରିବା କ'ଣ ଅପରାଧ ? ଏହି ଧର୍ମୀୟ ସ୍ୱାଧିନତା ଟିକକ ସେମାନଙ୍କୁ ଦିଆଗଲା ନାହିଁ ଯାହା ସେମାନଙ୍କର ଅଧିକାର ଥିଲା । ଦେଶ ଛାଡ଼ି ମଦିନା ପଳାୟନ କରିବାପରେ ମଧ୍ୟ ସେମାନଙ୍କୁ ରକ୍ଷା ମିଳିଲା ନାହିଁ । ଦୁର୍ବଳ ମୁସଲମାନମାନଙ୍କ ଉପରେ ବାରମ୍ବାର ଆକ୍ରମଣ ହେଲା । ଶତ୍ରୁମାନେ ମୁସଲମାନମାନଙ୍କୁ ନିଶ୍ଚିହ୍ନ କରିଦେବାର ଆପ୍ରାଣ ଉଦ୍ୟମ କରୁଥିଲେ । ଯଦି ମହାମାନ୍ୟ ଈଶ୍ୱରଦୂତ ଯୁଦ୍ଧ ନ କରିଥାନ୍ତେ, ତେବେ ମୁସଲମାନ ଯେ ଧରାପୃଷ୍ଠରୁ ସମ୍ପୂର୍ଣ୍ଣ ଲୋପ ପାଇଯାଇଥାଆନ୍ତେ, ଏଥିରେ ସନ୍ଦେହ ନାହିଁ । ଦୁଃଖ ଏତିକି ଯେ ଇସଲାମର ସମାଲୋଚକମାନଙ୍କ ଆଖି ମହାମାନ୍ୟ ମୁହମ୍ମଦଙ୍କ ତରବାରୀକୁ ଦେଖିପାରୁଛି ଅଥଚ ତାଙ୍କ ପ୍ରତି ସାରା ଜୀବନ କରାଯାଇଥିବା ଅତ୍ୟାଚାର ଦେଖି ପାରୁନାହିଁ ।



(୧୪) ଏନ୍ ଏପୋଲୋଜି ଫର୍ ମୁହମ୍ମଦ ଏଣ୍ଡ୍ ଦି କୁର୍‌ଆନ, ଲଣ୍ଡନ, ୧୮୬୯ ମୁଖବନ୍ଧ

# ଧର୍ମାନ୍ତରୀକରଣ ପାଇଁ ବଳପ୍ରୟୋଗ

ଇସଲାମ ବିରୋଧରେ ମିଥ୍ୟା ପ୍ରଚାର କରାଗଲା ଯେ ମୁସଲମାନମାନେ ତରବାରୀ ମୁନରେ ଧର୍ମ ପ୍ରଚାର କଲେ । ଯେକୌଣସି ପ୍ରକାରେ ହେଉ ମଣିଷକୁ ମୁସଲମାନ କରିଦେବାକୁ ଈଶ୍ୱର କହିନାହାନ୍ତି । ଧର୍ମରେ ବଳପ୍ରୟୋଗ ନିଷେଧ । ମଣିଷ ନିଜ ପାଇଁ ଧର୍ମପଥ ବାଛିବାରେ ସ୍ୱାଧୀନ । ଈଶ୍ୱର ତାକୁ ବିଚାର ବୁଦ୍ଧି ଦେଇ ଧର୍ମକ୍ଷେତ୍ରରେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ରତା ଦେଇଛନ୍ତି । କର୍ମ କରିବା ବା ନ କରିବାର ନିଷ୍ପତ୍ତି ମଣିଷ ନିଜେ ନିଏ ଏବଂ ତା' ଫଳ ମଧ୍ୟ ସେ ଭୋଗେ । ଏ ସମ୍ପର୍କରେ ଈଶ୍ୱର କାହାରିକୁ ବାଧ୍ୟ କରନ୍ତି ନାହିଁ । ଯଦି କେହି ସତ୍‌ପଥରେ ଚାଲିବାର ନିଷ୍ପତ୍ତି ନିଏ, ଈଶ୍ୱର ବାଧ୍ୟକରି ତାକୁ ବିପଥଗାମୀ କରନ୍ତି ନାହିଁ ବା ଯଦି ସେ ଅସତ୍‌ପଥ ବାଛେ, ତାକୁ ଜବରଦସ୍ତି ସତ୍‌ପଥଗାମୀ କରାଯାଏ ନାହିଁ । ଉଦାହରଣ ସ୍ୱରୂପ ଈଶ୍ୱର ସଭିଙ୍କୁ ଆହାର ଦିଅନ୍ତି, କିନ୍ତୁ ସେଇ ଉପାୟରେ ଦିଅନ୍ତି ଯାହା ମଣିଷ ନିଜେ ବାଛିଥାଏ । ବ୍ୟବସାୟ ବା ଚୋରି ମଧ୍ୟରୁ ଯଦି ଜଣେ ବ୍ୟବସାୟ ବୃତ୍ତି ବାଛେ, ତେବେ ଈଶ୍ୱର ତାକୁ ଜବରଦସ୍ତି ଚୋର କରନ୍ତି ନାହିଁ । ଈଶ୍ୱର ଇଚ୍ଛା କରିଥିଲେ ସବୁ ମଣିଷ ଗୋଟିଏ ଧର୍ମରେ ରୁହନ୍ତେ । ସଂସାରର ଅନ୍ୟ ସୃଷ୍ଟି ପରି ମଣିଷ ମଧ୍ୟ ତାଙ୍କର ଅବାଧ୍ୟ ହୋଇପାରି ନ ଥାଆନ୍ତା । କିନ୍ତୁ ସେ ଏହା ଚାହାନ୍ତି ନାହିଁ । ସେ ଚାହାନ୍ତି ଯେ ଭକ୍ତ ନିଜ ବୁଦ୍ଧିରୁ ତାଙ୍କୁ ଜାଣୁ, ନିଜ ଇଚ୍ଛାରେ ତାଙ୍କର ଭକ୍ତି ଉପାସନା କରୁ ଏବଂ ନିଜ ସାଧନା ବଳରେ ତାଙ୍କୁ ଲାଭ କରୁ । ତେଣୁ କାହାରିକୁ ଧର୍ମ ବିଷୟରେ ବାଧ୍ୟ ନ କରିବାକୁ ସେ ମହାମାନ୍ୟ ମୁହମ୍ମଦଙ୍କୁ ଉପଦେଶ ଦେଇ କୁହନ୍ତି—

> "ଏବଂ ଯଦି ତୁମ ପାଳନକର୍ତ୍ତା ଇଚ୍ଛା କରିଥାଆନ୍ତେ, ତେବେ ସାରା ବିଶ୍ୱବାସୀ ନିଶ୍ଚୟ ବିଶ୍ୱାସ କରିଥାଆନ୍ତେ, ତେବେ କ'ଣ (ହେ ମୁହମ୍ମଦ!) ତୁମେ ଲୋକଙ୍କୁ ବିଶ୍ୱାସ କରିବା ପାଇଁ ବାଧ୍ୟ କରିବ ?"
> (କୁରଆନ ୧୦/୯୯)

> "(ଆମ୍ଭର ସନ୍ଦେଶ) ପହଞ୍ଚାଇଦେବା ତୁମର ଦାୟିତ୍ୱ ଏବଂ ହିସାବ ନେବାର ଦାୟିତ୍ୱ ଆମ୍ଭର ।"(କୁରଆନ ୧୩/୪୦)

ଶ୍ରଦ୍ଧା ଓ ଭକ୍ତିଭାବରୁ ମଣିଷ ପୂଜା-ଉପାସନା କରିଥାଏ । ବଳପ୍ରୟୋଗ କରି ମଣିଷ ମନରେ କାହାରି ପ୍ରତି ଶ୍ରଦ୍ଧା ଉତ୍ପନ୍ନ କରିବା କ'ଣ ସମ୍ଭବ ? ତେଣୁ ମଣିଷକୁ କେବଳ ସତ ଓ ଅସତ୍ ମଧ୍ୟରେ ଥିବା ପାର୍ଥକ୍ୟ ବିଷୟରେ ଜଣାଇ ଦିଆଯାଏ । କେହି ସତ୍ୟକୁ ସ୍ୱୀକାର ନ କଲେ ତାକୁ ପିଟି ପିଟି ମୁସଲମାନ କରାଯାଏ ନାହିଁ । ଏ ସମ୍ପର୍କରେ କୁରଆନ ସ୍ପଷ୍ଟ କହିଛି–

"ଧର୍ମ ସଂକ୍ରାନ୍ତରେ କୌଣସି ବାଧ-ବାଧକତା ନାହିଁ, ସତ୍‌ମାର୍ଗକୁ ଅସତ୍ ମାର୍ଗରୁ ପୃଥକ କରିଦିଆଯାଇଛି ।" (କୁରଆନ-୨/୨୫୬)

ମହାମାନ୍ୟ ଈଶ୍ୱରଦୂତ ନିଜ ଜୀବନକାଳରେ ବଳପ୍ରୟୋଗ କରି ଧର୍ମ ପରିବର୍ତ୍ତନ କରିଥିବାର ଗୋଟିଏ ହେଲେ ଦୃଷ୍ଟାନ୍ତ ଇତିହାସରେ ନାହିଁ । ଧର୍ମ ପ୍ରଚାର ପାଇଁ ପଠାଉଥିବା ପ୍ରତିନିଧିଦଳଙ୍କୁ ସେ ବଳପ୍ରୟୋଗ ନ କରିବାର ଉପଦେଶ ଦେଉଥିଲେ । ମକ୍କା ବିଜୟ ହେଲାପରେ ସେଠାର ଶତ୍ରୁମାନଙ୍କ ସହ ସେ କିଭଳି ବ୍ୟବହାର କରିଥିଲେ ତାହା ଦେଖିବା କଥା । ଜଣେ ବିଜୟୀ ନରପତି ପରି ସେ ବ୍ୟବହାର କରି ନ ଥିଲେ । ବିଜୟୀ ଈଶ୍ୱରଦୂତଙ୍କ ସମ୍ମୁଖରେ ତାଙ୍କର ଚରମ ଶତ୍ରୁମାନେ ଥିଲେ ଯେଉଁମାନେ ତାଙ୍କୁ ଗାଳି ଦେଇଥିଲେ, ତାଙ୍କ ବାଟରେ କଣ୍ଟା ପକାଇଥିଲେ, ତାଙ୍କ ପରିବାରକୁ ସାମାଜିକ ବାସନ୍ଦ କରିଥିଲେ, ତାଙ୍କୁ ହତ୍ୟା କରିବାକୁ ଚେଷ୍ଟା କରିଥିଲେ, ତାଙ୍କ ସାଥିମାନଙ୍କୁ ହତ୍ୟା କରିଥିଲେ, ସେମାନଙ୍କ ଘରଦ୍ୱାର ଓ ସମ୍ପତ୍ତି ଦଖଲ କରି ନେଇଥିଲେ ଏବଂ ସେମାନଙ୍କୁ ନିଜ ଜନ୍ମସ୍ଥାନ ଛାଡିବାକୁ ବାଧ କରିଥିଲେ । କେତେକ ମୁସଲମାନ ପ୍ରତିଶୋଧ ନେବାପାଇଁ ଚାହୁଁଥିଲେ, କିନ୍ତୁ ଉଦାର ଈଶ୍ୱରଦୂତ କୌଣସି ପ୍ରତିଶୋଧ ନେଲେ ନାହିଁ । ସେ ସମସ୍ତଙ୍କୁ କ୍ଷମାଦେଲେ । ସେ ଚାହିଁଥିଲେ ଇସଲାମ ଧର୍ମ ଗ୍ରହଣ କରିବାପାଇଁ ସେମାନଙ୍କୁ ବାଧ କରିପାରି ଥାଆନ୍ତେ । ଐତିହାସିକ ଲେନପୁଲଙ୍କ ଭାଷାରେ—

"ବଦର୍ ଯୁଦ୍ଧ ପରେ ଯୁଦ୍ଧବନ୍ଦୀମାନଙ୍କ ପ୍ରତି ମୁହମ୍ମଦଙ୍କ ବ୍ୟବହାର ଆମେ ଦେଖିବା ଉଚିତ । ଆମେ ଦେଖିବା ଉଚିତ ମଦିନାର ଶତ୍ରୁମାନଙ୍କ ପ୍ରତି ତାଙ୍କର ଭଦ୍ରୋଚିତ ବ୍ୟବହାର, ଛୋଟପିଲା ଓ ମୂକ ପଶୁପକ୍ଷୀଙ୍କ ପ୍ରତି ତାଙ୍କର ସ୍ନେହ ଏବଂ ସର୍ବୋପରି ବିନା

> ରକ୍ତପାତରେ ତାଙ୍କର ମକ୍କାରେ ପ୍ରବେଶ ଏବଂ ଦେଖିବା ଉଚିତ ଯେ ମକ୍କାର ଯେଉଁ ଶତ୍ରୁମାନେ ଦୀର୍ଘ ୧୭ବର୍ଷ କାଳ ତାଙ୍କୁ ନାନା ପ୍ରକାର ଲାଞ୍ଛନା ଓ ନିର୍ଯ୍ୟାତନା ଦେଇ ଆସିଥିଲେ ଓ ତାଙ୍କ ସହିତ ଯୁଦ୍ଧ କରିଥିଲେ, ସେମାନଙ୍କୁ କିପରି ସେ ସମ୍ପୂର୍ଣ୍ଣ ରାଜକ୍ଷମା ଦେଇଦେଲେ ।"[୧୫]

ଏଭଳି ଉଦାରତାର ଉଦାହରଣ ବିଶ୍ୱ ଇତିହାସରେ ମିଳିବା କଷ୍ଟକର । ଏହାର ଫଳସ୍ୱରୂପ ଏହି ଶତ୍ରୁମାନଙ୍କ ମଧ୍ୟରୁ ପ୍ରାୟ ୨୦୦୦ ଲୋକ ସ୍ୱଇଚ୍ଛାରେ ହୁନୈନ ଯୁଦ୍ଧରେ ମହାମାନ୍ୟ ମୁହମ୍ମଦଙ୍କ ସପକ୍ଷରେ ଯୁଦ୍ଧ କରିଥିଲେ ।

ଖଲିଫା ହଜରତ ଉମରଙ୍କର ଜଣେ ସେବକ ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ଥିଲା । ସେ ତାକୁ ଇସଲାମ ଗ୍ରହଣ କରିବାକୁ ଉପଦେଶ ଦିଅନ୍ତି କିନ୍ତୁ କେବେହେଲେ ବାଧ୍ୟ କରନ୍ତି ନାହିଁ । କୁହନ୍ତି—"ଧର୍ମରେ ବାଧ୍ୟ ବାଧକତା ନାହିଁ।" ସେ ସେବକଟି ତାଙ୍କ ସମ୍ପୂର୍ଣ୍ଣ ଜୀବନକାଳରେ ଖ୍ରୀଷ୍ଟିୟାନ ରୂପେ ତାଙ୍କ ପାଖରେ ରହିଥିଲା । ଏବେ ମଧ୍ୟ ୧କୋଟି ୪୦ ଲକ୍ଷରୁ ଅଧିକ ଖ୍ରୀଷ୍ଟିୟାନ ଆରବ ଦେଶଗୁଡିକରେ ଅଛନ୍ତି । ସେମାନେ ବଂଶାନୁକ୍ରମିକଭାବେ ସେଠାରେ ବସବାସ କରିଆସୁଛନ୍ତି । ଆରବରେ ମୁସଲିମ ଶାସନ ଚାଲିଛି । ଇସଲାମରେ ଯଦି ବଳପ୍ରୟୋଗର ଅନୁମତି ଥାଆନ୍ତା ତେବେ ସେଠାରେ କେହି ଖ୍ରୀଷ୍ଟିୟାନ ନ ଥାଆନ୍ତେ । ଇଣ୍ଡୋନେସିଆ ଓ ମାଲେସିଆରେ ସର୍ବାଧିକ ମୁସଲମାନ ବାସ କରନ୍ତି । କ'ଣ କେବେ କୌଣସି ମୁସଲିମ୍‌ବାହିନୀ ଏହି ଦେଶଗୁଡ଼ିକ ଉପରେ ଆକ୍ରମଣ କରିଥିଲା ? ବର୍ତ୍ତମାନ ଆମେରିକା ଓ ୟୁରୋପରେ ମଧ୍ୟ ସର୍ବାଧିକ ପ୍ରସାରିତ ଧର୍ମ ଇସଲାମ । ସେଠାର ଲୋକଙ୍କୁ ତରବାରୀ ବା ବନ୍ଧୁକ ମୁନରେ କିଏ ମୁସଲମାନ କରୁଛି ?



(୧୫) ଷ୍ଟଡିଜ୍ ଇନ୍ ଏ ମସ୍କ, ଷ୍ଟେନଲି ଲେନପୁଲ୍, ଲଣ୍ଡନ, ୧୮୮୩, ପୃ.୭୬-୭୭

# ଭାରତର ମୁସଲିମ ଶାସକଙ୍କ ପ୍ରତି ଆରୋପ

ଭାରତର ମୁସଲମାନ ଶାସକମାନେ ହିନ୍ଦୁମାନଙ୍କ ପ୍ରତି ବଳପ୍ରୟୋଗ କରି ଧର୍ମାନ୍ତରୀକରଣ କରୁଥିଲେ ବୋଲି ଯାହା ପ୍ରଚାର ହେଉଛି, ବାସ୍ତବିକତା କିନ୍ତୁ ତାହା ନୁହେଁ । ଭାରତରେ ମୋଗଲ ଶାସକମାନେ ସାଂପ୍ରଦାୟିକ ସୌହାର୍ଦ୍ଦ୍ୟ ଓ ଧର୍ମ ସମନ୍ୱୟର ଅନେକ ସୁନ୍ଦର ଉଦାହରଣ ଦେଇଯାଇଛନ୍ତି । ଐତିହାସିକ ତଥ୍ୟକୁ କିଭଳି ବିକୃତ କରାଯାଏ, ଏହାର ଉଦାହରଣ ଦେଇ ଓଡିଶାର ଭୂତପୂର୍ବ ରାଜ୍ୟପାଳ ଓ ଐତିହାସିକ ଶ୍ରୀଯୁକ୍ତ ବିଶ୍ୱମ୍ଭରନାଥ ପାଣ୍ଡେ ନିଜର ଅନୁଭୂତି ବର୍ଣ୍ଣନା କରି କୁହନ୍ତି-

> "୧୯୨୮ ମସିହାରେ ଯେତେବେଳେ ମୁଁ ଆଲ୍ଲାହବାଦରେ ଟିପୁ ସୁଲତାନଙ୍କ ଉପରେ ଗବେଷଣା କରୁଥିଲି, ଏଂଗ୍ଲୋ-ବେଙ୍ଗଲି କଲେଜ ଛାତ୍ର ସଙ୍ଗଠନର କେତେକ କର୍ମକର୍ତ୍ତା ମୋ ପାଖକୁ ଆସିଲେ ଏବଂ 'ହିଷ୍ଟ୍ରି ଆସୋସିଏସନ' ଉଦଘାଟନ କରିବାପାଇଁ ମୋତେ ଆମନ୍ତ୍ରିତ କଲେ । ଏମାନେ କଲେଜରୁ ସିଧାସଳଖ ମୋ ପାଖକୁ ଆସିଥିଲେ । ସେମାନଙ୍କ ହାତରେ ପାଠ୍ୟକ୍ରମର ପୁସ୍ତକ ମଧ୍ୟ ଥିଲା । ସଂଯୋଗବଶତଃ ସେମାନଙ୍କ ଇତିହାସ ବହି ଉପରେ ମୋ 'ନଜର ପଡିଲା । ମୁଁ ଟିପୁ ସୁଲତାନ ସମ୍ବନ୍ଧୀୟ ଅଧ୍ୟାୟ ଖୋଲିଲି । ଯେଉଁ ବାକ୍ୟଟି ମୋତେ ଭାରି ଆଶ୍ଚର୍ଯ୍ୟ କଲା ତାହା ଥିଲା—"ତିନି ହଜାର ବ୍ରାହ୍ମଣ ଆତ୍ମହତ୍ୟା କଲେ କାରଣ ଟିପୁ ସେମାନଙ୍କୁ ମୁସଲମାନ କରିବାକୁ ଚାହୁଁଥିଲେ ।'' ଏହି ପାଠ୍ୟପୁସ୍ତକର ଲେଖକ ଥିଲେ ମହାମହୋପାଧ୍ୟାୟ ଡଃ. ହରପ୍ରସାଦ ଶାସ୍ତ୍ରୀ ଯିଏ କି କଲିକତା ବିଶ୍ୱବିଦ୍ୟାଳୟରେ ସଂସ୍କୃତ ବିଭାଗର ଅଧକ୍ଷ ଥିଲେ । ମୁଁ ତୁରନ୍ତ ଡକ୍ଟର ଶାସ୍ତ୍ରୀଙ୍କୁ ଲେଖିଲି ଯେ ସେ ଟିପୁ ସୁଲତାନଙ୍କ ବିଷୟରେ ଉପରୋକ୍ତ ମନ୍ତବ୍ୟ କେଉଁ ଆଧାର ଉପରେ ଏବଂ କାହାଠାରୁ ଉଦ୍ଧାର କରିଛନ୍ତି । ଅନେକ ପତ୍ର ଲେଖିବାପରେ ତାଙ୍କର ଉତ୍ତର ଆସିଲା ଯେ ଏହା ସେ ମହୀଶୂର ଗେଜେଟିୟରରୁ ଉଦ୍ଧାର କରିଛନ୍ତି । ମହୀଶୂର ଗେଜେଟିୟର ଆଲ୍ଲାହବାଦରେ ବା କଲିକତା ଇମ୍ପେରିଆଲ

ଲାଇବ୍ରେରୀରେ ମିଳିଲା ନାହିଁ । ତେଣୁ ମୁଁ ମହୀଶୂର ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ସାର୍ ବୃଜେନ୍ଦ୍ରନାଥ ସିଲ୍‌ଙ୍କୁ ଲେଖିଲି ଯେ ଡକ୍ଟର ଶାସ୍ତ୍ରୀ ଯାହା ଲେଖିଛନ୍ତି, ସେ ସମ୍ପର୍କରେ ସେ ଜଣାନ୍ତୁ । ସେ ମୋ ପତ୍ରକୁ ପ୍ରଫେସର କଣ୍ଟୟାଙ୍କ ନିକଟକୁ ପଠାଇଦେଲେ, ଯିଏ କି ସେତେବେଳେ ମହୀଶୂର ଗେଜେଟିୟରର ନୂଆ ସଂସ୍କରଣ ପ୍ରସ୍ତୁତ କରୁଥିଲେ ।

ପ୍ରଫେସର ଶ୍ରୀଯୁକ୍ତ କଣ୍ଟେୟା ମୋତେ ଲେଖିଲେ ଯେ ତିନି ହଜାର ବ୍ରାହ୍ମଣଙ୍କ ଆତ୍ମହତ୍ୟା ଘଟଣା ମହୀଶୂର ଗେଜେଟିୟରରେ କେଉଁଠି ହେଲେ ନାହିଁ ଏବଂ ମହୀଶୂର ଇତିହାସର ଜଣେ ବିଦ୍ୟାର୍ଥୀ ହୋଇଥିବା ଦୃଷ୍ଟିରୁ ତାଙ୍କର ଦୃଢ଼ବିଶ୍ୱାସ ଯେ ଏପରି କୌଣସି ଘଟଣା ଘଟି ନାହିଁ । ସେ ମୋତେ ସୂଚନା ଦେଲେ ଯେ ଟିପୁ ସୁଲତାନଙ୍କ ପ୍ରଧାନମନ୍ତ୍ରୀ ପୁନେୟା ନାମକ ଜଣେ ବ୍ରାହ୍ମଣ ଥିଲେ ଏବଂ ତାଙ୍କ ସେନାପତି ମଧ୍ୟ କୃଷ୍ଣ ରାଓ ନାମକ ଜଣେ ବ୍ରାହ୍ମଣ ଥିଲେ । ସେ ମୋତେ ଏଭଳି ୧୫୬ଟି ମନ୍ଦିରର ତାଲିକା ପଠାଇଲେ ଯେଉଁଗୁଡ଼ିକୁ ଟିପୁ ସୁଲତାନ ବାର୍ଷିକ ଅନୁଦାନ ଦେଉଥିଲେ । ସେ ଟିପୁ ସୁଲତାନଙ୍କ ୩୦ଗୋଟି ପତ୍ରର ନକଲ ମଧ୍ୟ ପଠାଇଲେ ଯାହାକୁ ଟିପୁ ଶୃଙ୍ଗେରୀ ମଠର ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କୁ ଲେଖିଥିଲେ ଏବଂ ଯାହାଙ୍କ ସହ ସୁଲତାନଙ୍କ ଘନିଷ୍ଠ ସମ୍ପର୍କ ଥିଲା ।... ... ଡଃ. ଶାସ୍ତ୍ରୀଙ୍କ ପୁସ୍ତକ ପଶ୍ଚିମବଙ୍ଗ, ଆସାମ, ବିହାର, ଓଡିଶା, ଉତ୍ତରପ୍ରଦେଶ ଏବଂ ରାଜସ୍ଥାନରେ ପାଠ୍ୟକ୍ରମ ପାଇଁ ସ୍ୱୀକୃତ ଥିଲା। ମୁଁ କଲିକତା ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ସାର୍ ଆଶୁତୋଷ ଚୌଧୁରୀଙ୍କୁ ପତ୍ର ଲେଖିଲି ଏବଂ ଏ ସମ୍ପର୍କରେ କରିଥିବା ସମସ୍ତ ପତ୍ରାଳାପର ନକଲ ପଠାଇଲି ଏବଂ ତାଙ୍କୁ ନିବେଦନ କଲି ଯେ ଇତିହାସର ଏହି ପାଠ୍ୟପୁସ୍ତକରେ ଟିପୁ ସୁଲତାନଙ୍କ ସମ୍ପର୍କରେ ଯେଉଁ ତ୍ରୁଟିପୂର୍ଣ୍ଣ ଓ ଭ୍ରମାତ୍ମକ ତଥ୍ୟ ଦିଆଯାଇଛି, ତା' ବିରୁଦ୍ଧରେ ଉଚିତ କାର୍ଯ୍ୟାନୁଷ୍ଠାନ କରାଯାଉ । ସାର୍ ଆଶୁତୋଷ ଚୌଧୁରୀ ଶୀଘ୍ର ପ୍ରତ୍ୟୁତ୍ତର ଦେଲେ ଯେ, ଡଃ. ଶାସ୍ତ୍ରୀଙ୍କ ସେହି ପୁସ୍ତକକୁ ପାଠ୍ୟକ୍ରମରୁ

ବାଦ୍ ଦିଆଯାଇଛି । କିନ୍ତୁ ମୋତେ ଏହା ଦେଖି ଆଶ୍ଚର୍ଯ୍ୟ ହେଲା ଯେ ଆତ୍ମହତ୍ୟାର ସେହି ଘଟଣା ୧୯୭୨ ମସିହାରେ ମଧ୍ୟ ଉତ୍ତରପ୍ରଦେଶର ଜୁନିୟର ହାଇସ୍କୁଲ ଶ୍ରେଣୀଗୁଡ଼ିକର ଇତିହାସ ପାଠ୍ୟକ୍ରମ ପୁସ୍ତକରେ ସେହିଭଳି ରହିଥିଲା । ଏହି ସନ୍ଦର୍ଭରେ ମହାତ୍ମାଗାନ୍ଧୀଙ୍କର ଟିପ୍ପଣୀ ପଠନଯୋଗ୍ୟ ଯାହା ସେ ନିଜ ପତ୍ରିକା ୟଙ୍ଗ୍ ଇଣ୍ଡିଆର ଜାନୁୟାରୀ ୨୩, ୧୯୩୦ ଅଙ୍କରେ ପୃଷ୍ଠା-୩୧ରେ କହିଥିଲେ । ସେ କହିଥିଲେ—'ମହୀଶୂରର ଫତେ ଅଲି (ଟିପୁ ସୁଲତାନ)ଙ୍କୁ ବିଦେଶୀ ଐତିହାସିକମାନେ ଏଭଳି ଉପସ୍ଥାପନା କରିଛନ୍ତି ଯେପରିକି ସେ ଧର୍ମାନ୍ଧତାର ଶିକାର ଥିଲେ । ଏହି ଐତିହାସିକମାନେ ଲେଖିଛନ୍ତି ଯେ, ସେ ନିଜ ହିନ୍ଦୁ ପ୍ରଜାଙ୍କ ପ୍ରତି ଅତ୍ୟାଚାର କଲେ ଏବଂ ସେମାନଙ୍କୁ ଜବରଦସ୍ତି ମୁସଲମାନ କଲେ । କିନ୍ତୁ, ବାସ୍ତବିକତା ଏହାର ସମ୍ପୂର୍ଣ୍ଣ ବିପରୀତ ଥିଲା । ହିନ୍ଦୁ ପ୍ରଜାଙ୍କ ସହ ତାଙ୍କର ଖୁବ ଭଲ ସମ୍ବନ୍ଧ ଥିଲା ।.... ମହୀଶୂରର (ଏବେ କର୍ଣ୍ଣାଟକ) ପ୍ରତ୍ନତତ୍ତ୍ୱ ବିଭାଗ ନିକଟରେ ଏଭଳି ତିରିଶିଗୋଟି ପତ୍ର ଅଛି ଯାହାକୁ ଟିପୁ ସୁଲତାନ ଶୃଙ୍ଗେରୀ ମଠର ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କୁ ୧୭୯୩ ମସିହାରେ ଲେଖିଥିଲେ । ଏହା ମଧ୍ୟରୁ ଗୋଟିଏ ପତ୍ରରେ ଟିପୁ ସୁଲତାନ ଶଙ୍କରାଚାର୍ଯ୍ୟଙ୍କ ପତ୍ରର ପ୍ରାପ୍ତି ସ୍ୱୀକାର କରି ତାଙ୍କୁ ନିବେଦନ କରିଛନ୍ତି ଯେ, ସେ ତାଙ୍କର ଏବଂ ସାରା ବିଶ୍ୱର ଶାନ୍ତି, କଲ୍ୟାଣ ଓ ସୁଖସମୃଦ୍ଧି ପାଇଁ ତପଃ ଓ ପ୍ରାର୍ଥନା କରନ୍ତୁ । ଶେଷରେ ସେ ଶଙ୍କରାଚାର୍ଯ୍ୟଙ୍କୁ ଏହା ମଧ୍ୟ ଅନୁରୋଧ କରିଛନ୍ତି ଯେ, ସେ ମହୀଶୂର ଫେରି ଆସନ୍ତୁ, କାରଣ ଦେଶରେ କୌଣସି ଭଲ ଲୋକ ରହିଲେ ବର୍ଷା ହୁଏ, ଫସଲ ଭଲ ହୁଏ ଏବଂ ସୁଖଶାନ୍ତି ଆସେ ।' ଏହି ପତ୍ରଟି ଭାରତ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବା ଯୋଗ୍ୟ ।''[୧୬]

---

(୧୬) ପ୍ରଫେସର ବିଶ୍ୱମ୍ଭରନାଥ ପାଣ୍ଡେ, ଇତିହାସ୍‌କେ ସାଥ୍ ୟହ ଅନ୍ୟାୟ, ପୃ. ୫-୭

ଏହି ପ୍ରକାର ଆଉ ଗୋଟିଏ ଅନୁଭବ ବର୍ଣ୍ଣନା କରି ଶ୍ରୀଯୁକ୍ତ ପାଣ୍ଡେ କୁହନ୍ତି–

"ଠିକ୍ ଏମିତି ଯେତେବେଳେ ମୁଁ ଆଲ୍ଲାହବାଦ ନଗରପାଳିକାର ଚେୟାରମ୍ୟାନ ଥିଲି (୧୯୪୮-୧୯୫୩), ମୋ ପାଖକୁ ଦାଖିଲ-ଖାରଜର ଗୋଟିଏ ମକଦ୍ଦମା ଆସିଲା । ଏହି ମକଦ୍ଦମା ସୋମେଶ୍ୱରନାଥ ମହାଦେବ ମନ୍ଦିର ସମ୍ପତ୍ତି ସମ୍ପର୍କରେ ଥିଲା । ମନ୍ଦିର ମହନ୍ତର ମୃତ୍ୟୁ ପରେ ସେହି ସମ୍ପତ୍ତିର ଦୁଇଜଣ ଦାବୀଦାର ଉପସ୍ଥିତ ହେଲେ । ଜଣେ ଦାବୀଦାର କେତେକ ଦସ୍ତାବିଜ ଦାଖଲ କଲେ, ଯାହା ତାଙ୍କ ବଂଶରେ ଦୀର୍ଘ ଦିନରୁ ରହି ଆସିଥିଲା । ଏହି ଦସ୍ତାବିଜରେ ସୁଲ୍ତାନ ଔରଙ୍ଗଜେବଙ୍କ ଆଦେଶନାମା ମଧ୍ୟ ଥିଲା । ଔରଙ୍ଗଜେବ ଏହି ମନ୍ଦିରକୁ ଜାଗିର ଓ ନଗଦ ଅନୁଦାନ ଦେଇଥିଲେ । ମୋର ମନେ ହେଲା ସେହି ଆଦେଶନାମା ନକଲି ହୋଇଥିବ । ମୋତେ ଆଶ୍ଚର୍ଯ୍ୟ ଲାଗିଲା ଯେ ଏହା କେମିତି ସମ୍ଭବ ଯେ ଯେଉଁ ଔରଙ୍ଗଜେବ ମନ୍ଦିର ଭାଙ୍ଗି ପ୍ରସିଦ୍ଧ, ସେ ଗୋଟାଏ ମନ୍ଦିରକୁ ଏକଥା କହି ଜାଗିର ଦେଇପାରନ୍ତି ଯେ ଉକ୍ତ ଜାଗିର ପୂଜା ଓ ଭୋଗ ପାଇଁ ଦିଆଯାଉଛି । ଔରଙ୍ଗଜେବ ମୂର୍ତ୍ତିପୂଜା ସହ କିପରି ସଂଶ୍ଳିଷ୍ଟ ହୋଇପାରନ୍ତି ? ମୁଁ ନିଶ୍ଚିତ ଥିଲି ଯେ ସେ ଦସ୍ତାବିଜଟି ନକଲି । କିନ୍ତୁ କୌଣସି ନିଷ୍ପତ୍ତି ନେବାପୂର୍ବରୁ ମୁଁ ସାର୍ ତେଜବାହାଦୂର ସାପ୍ରୁଙ୍କଠାରୁ ମତାମତ ନେବା ଉଚିତ ମନେ କଲି । ଆରବୀ ଓ ପାର୍ସିରେ ତାଙ୍କର ଭଲ ଦକ୍ଷତା ଥିଲା । ମୁଁ ଦଲିଲଗୁଡ଼ିକୁ ତାଙ୍କ ସମ୍ମୁଖରେ ଉପସ୍ଥାପନ କରି ତାଙ୍କ ମତାମତ ଲୋଡ଼ିବାରୁ ସେ ସେଗୁଡ଼ିକୁ ଅଧ୍ୟୟନ କରି କହିଲେ ଯେ ଔରଙ୍ଗଜେବଙ୍କ ଆଦେଶନାମା ଅସଲି ଏବଂ ବାସ୍ତବିକ । ଏହାପରେ ସେ ନିଜ ମୁନ୍ସୀକୁ ବନାରସର ଜଙ୍ଗମବାଡି ଶିବ ମନ୍ଦିର ଫାଇଲ ଆଣିବାକୁ କହିଲେ । ଏହି ମକଦ୍ଦମା ଆଲ୍ଲାହବାଦ ହାଇକୋର୍ଟରେ ୧୫ ବର୍ଷରୁ ବିଚାରାଧୀନ ଥିଲା । ଜଙ୍ଗମବାଡି ମନ୍ଦିର ମହନ୍ତଙ୍କ ପାଖରେ ମଧ୍ୟ ଔରଙ୍ଗଜେବଙ୍କ ଅନେକ ଆଦେଶନାମା ଥିଲା ଯେଉଁଥିରେ ମନ୍ଦିରକୁ ଜାଗିର ପ୍ରଦାନ

କରାଯାଇଥିଲା । ଏହି ଦସ୍ତାବିଜଗୁଡ଼ିକ ଔରଙ୍ଗଜେବଙ୍କର ଏକ ନୂଆ ରୂପ ମୋ ସମ୍ମୁଖକୁ ଆଣିଲା, ଯାହା ମୋତେ ଆଶ୍ଚର୍ଯ୍ୟଚକିତ କଲା । ଡଃ. ସାପ୍ରୁଙ୍କ ଉପଦେଶ ଅନୁସାରେ ମୁଁ ଭାରତର ପ୍ରମୁଖ ମନ୍ଦିରର ମହନ୍ତମାନଙ୍କ ନିକଟକୁ ପତ୍ର ଲେଖି ସେମାନଙ୍କୁ ଅନୁରୋଧ କଲି ଯେ ଯଦି ସେମାନଙ୍କ ପାଖରେ ଔରଙ୍ଗଜେବଙ୍କର କୌଣସି ଆଦେଶନାମା ଥାଏ ଯେଉଁଥିରେ ସେହି ମନ୍ଦିରଗୁଡ଼ିକୁ ଜାଗିର ଦିଆଯାଇଛି, ତେବେ ଦୟାକରି ସେଗୁଡ଼ିକର ନକଲ ମୋ ପାଖକୁ ପଠାନ୍ତୁ ।

ଏବେ ମୋ ସାମନାକୁ ଆଉ ଗୋଟିଏ ଆଶ୍ଚର୍ଯ୍ୟ କଥା ଆସିଲା । ଉଜ୍ଜୟିନୀର ମହାକାଳେଶ୍ୱର ମନ୍ଦିର, ଚିତ୍ରକୂଟର ବାଲାଜୀ ମନ୍ଦିର, ଗୌହାଟିର ଉମାନନ୍ଦ ମନ୍ଦିର, ଶତ୍ରୁଂଜାଇର ଜୈନ ମନ୍ଦିର ଏବଂ ଉତ୍ତର ଭାରତରେ ବିସ୍ତାରିତ ହୋଇ ରହିଥିବା ଅନ୍ୟ ପ୍ରମୁଖ ମନ୍ଦିର ଓ ଗୁରୁଦ୍ୱାର ସମ୍ବନ୍ଧୀୟ ଜାଗିର ପାଇଁ ଔରଙ୍ଗଜେବଙ୍କ ଆଦେଶନାମାର ନକଲ ମୋତେ ମିଳିଲା । ଏହି ଆଦେଶନାମା ୧୦୬୫ ହିଜରିରୁ ୧୦୯୧ ହିଜରି ଅର୍ଥାତ୍ ୧୬୫୯ରୁ ୧୬୮୫ ମସିହା ମଧ୍ୟରେ ଜାରି କରାଯାଇଥିଲା । ଅବଶ୍ୟ ହିନ୍ଦୁ ଓ ସେମାନଙ୍କ ମନ୍ଦିର ପ୍ରତି ଔରଙ୍ଗଜେବଙ୍କ ଉଦାର ମନୋଭାବର ଏହା କେତୋଟି ଉଦାହରଣ ମାତ୍ର, ତଥାପି ଏଥିରୁ ପ୍ରମାଣିତ ହୋଇଯାଉଛି ଯେ ଐତିହାସିକମାନେ ତାଙ୍କ ସମ୍ପର୍କରେ ଯାହା କିଛି ଲେଖିଛନ୍ତି ସେଗୁଡ଼ିକ ପକ୍ଷପାତ ଉପରେ ଆଧାରିତ ଏବଂ ସେଥିରୁ ତାଙ୍କ ଛବିର କେବଳ ଗୋଟିଏ ପାର୍ଶ୍ୱ ପ୍ରକାଶ କରାଯାଇଛି ।"(୧୭)

ସେହିପରି ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ରପ୍ରସାଦ ତାଙ୍କର "ଇଣ୍ଡିଆ ଡିଭାଇଡେଡ୍" ପୁସ୍ତକରେ ମୁସଲମାନ ଶାସକଙ୍କର ଧର୍ମୀୟ ଉଦାରତାର ଅନେକ ଉଦାହରଣ ଦେଇଛନ୍ତି । ସୁଲତାନ ଔରଙ୍ଗଜେବଙ୍କ ସମ୍ପର୍କରେ ସେ କୁହନ୍ତି—

---

(୧୭) ପ୍ରଫେସର ବିଶ୍ୱମ୍ଭରନାଥ ପାଣ୍ଡେ, ଇତିହାସ୍‌କେ ସାଥ୍ ୟହ ଅନ୍ୟାୟ, ନୂଆଦିଲ୍ଲୀ, ପୃ.୮-୯

"ସାଧାରଣତଃ ବିଶ୍ୱାସ କରାଯାଏ ଯେ ଔରଙ୍ଗଜେବ ହିନ୍ଦୁମାନଙ୍କୁ ବଳ ପ୍ରୟୋଗ କରି ଇସଲାମ ଧର୍ମରେ ଦୀକ୍ଷିତ କରିଥିଲେ । କିନ୍ତୁ ଗୋଟିଏ ବିଚିତ୍ର ଘଟଣା ଏଠାରେ ବର୍ଣ୍ଣନା କରାଯାଉଛି ଯେଉଁଥିରୁ ତାଙ୍କ ମନୋଭାବର ପରିଚୟ ମିଳେ । ବାରମ୍ବାର ଆଦେଶ ଅମାନ୍ୟ କରିବା ଯୋଗୁଁ ଶାହଜାହାନ ଓ୍ୱାନ୍ଧେରାର ରାଜା ଇନ୍ଦ୍ରମଣଙ୍କୁ ବନ୍ଦୀ କରିଥିଲେ। ଯେତେବେଳେ ଔରଙ୍ଗଜେବ ଡେକାନର ସୁବେଦାର ନିଯୁକ୍ତ ହେଲେ, ସେ ତାଙ୍କ ମୁକ୍ତି ପାଇଁ ଶାହଜାହାନଙ୍କୁ ଦୃଢ଼ ସୁପାରିଶ କଲେ । କିନ୍ତୁ ଶାହଜାହାନ ଇନ୍ଦ୍ରମଣଙ୍କ ପ୍ରତି ଏତେ ଅସନ୍ତୁଷ୍ଟ ଥିଲେ ଯେ ସେ ଔରଙ୍ଗଜେବଙ୍କ ସୁପାରିଶକୁ ପ୍ରତ୍ୟାଖ୍ୟାନ କରିଦେଲେ ଏବଂ ତାଙ୍କୁ ଲେଖିଲେ ଯେ ଇନ୍ଦ୍ରମଣ ବାରମ୍ବାର ତାଙ୍କୁ ଅସନ୍ତୁଷ୍ଟ କରିଛନ୍ତି, ମାତ୍ର ଯଦି ସେ ମୁସଲମାନ ହୋଇଯାଆନ୍ତି ତେବେ ତାଙ୍କୁ ମୁକ୍ତି ଦିଆଯାଇପାରେ। ଔରଙ୍ଗଜେବ ଏହାର ଦୃଢ଼ ବିରୋଧ କଲେ ଏବଂ ଶାହଜାହାନଙ୍କୁ ଲେଖିଲେ ଯେ ଏହି ସର୍ତ୍ତ ପାଳନଯୋଗ୍ୟ ନୁହେଁ କାରଣ ଏହା ଅସମୀଚୀନ ତଥା ଦୂରଦୃଷ୍ଟିବିହୀନ ଏବଂ ଯଦି ତାଙ୍କୁ ମୁକ୍ତ କରାଯାଏ ତେବେ ତାଙ୍କ ନିଜ ସର୍ତ୍ତ ଅନୁସାରେ ମୁକ୍ତ କରାଯିବା ଉଚିତ ।[୧୮]

ଡଃ. ରାଜେନ୍ଦ୍ର ପ୍ରସାଦ ଏହା ମଧ୍ୟ ଲେଖିଛନ୍ତି—

"ଔରଙ୍ଗଜେବ ବହୁ ଯୋଗ୍ୟ ହିନ୍ଦୁଙ୍କ ନିଯୁକ୍ତି ପାଇଁ ଶାହଜାହାନ ଓ ତାଙ୍କ ମନ୍ତ୍ରୀମଣ୍ଡଳକୁ ସୁପାରିଶ କରିଥିଲେ । ଉଦାହରଣ ସ୍ୱରୂପ ଇଲିଛପୁର ଦିଓ୍ୱାନୀ ପଦ ଖାଲି ହେବାରୁ ସେ ରାମକରଣ ନାମକ ଜଣେ ରାଜପୁତ ଅଧିକାରୀଙ୍କ ନାମ ଦୃଢ଼ଭାବରେ ସୁପାରିସ କରିଥିଲେ । କିନ୍ତୁ କୌଣସି କାରଣରୁ ଶାହଜାହାନ ତାଙ୍କ ସୁପାରିଶ ଗ୍ରହଣ କଲେ ନାହିଁ । ଔରଙ୍ଗଜେବ ଦ୍ୱିତୀୟ ଥର ତାଙ୍କୁ ଲେଖିଲେ

[୧୮] ଇଣ୍ଡିଆ ଡିଭାଇଡେଡ୍, ଡଃ. ରାଜେନ୍ଦ୍ର ପ୍ରସାଦ, ପୃ.-୪୦, ବମ୍ବେ ୧୯୪୭

ଯେ (ଏହି ସ୍ଥାନ ପାଇଁ) ଆଉ ଅଧିକ ଭଲ ଲୋକ ମିଳିବେ ନାହିଁ ।"[୧୯]

ଏହି ପ୍ରସଙ୍ଗରେ ପୁତ୍ର ଯୁବରାଜ ହୁମାୟୁନଙ୍କୁ ସୁଲତାନ ବାବର କରିଥିବା ଇଚ୍ଛାପତ୍ର ମୋଗଲ ସମ୍ରାଟମାନଙ୍କ ଧର୍ମୀୟ ଉଦାରତାର ପରିଚୟ ଦିଏ । ଇଚ୍ଛାପତ୍ରରେ ସୁଲତାନ ବାବର ପୁଅକୁ ଅନ୍ତିମ ଉପଦେଶ ଦେଇ କହିଛନ୍ତି—

"ହେ ପୁତ୍ର! ଭାରତ ଦେଶ ବିଭିନ୍ନ ଧର୍ମରେ ପରିପୂର୍ଣ୍ଣ । ଈଶ୍ୱରଙ୍କୁ ଧନ୍ୟବାଦ ଯେ ସେ ତୁମକୁ ଏହା ଉପରେ ଆଧିପତ୍ୟ ପ୍ରଦାନ କରିଛନ୍ତି । ଏହା ତୁମର କର୍ତ୍ତବ୍ୟ ଯେ ତୁମେ ତୁମ ହୃଦୟପଟ୍ଟରୁ ସବୁପ୍ରକାର ଧର୍ମଗତ ଭେଦଭାବ ପୋଛିଦେବ ଓ ପ୍ରତ୍ୟେକ ଧର୍ମର ପନ୍ଥା ଅନୁସାରେ ନ୍ୟାୟ ବ୍ୟବସ୍ଥା କରିବ । ବିଶେଷ ଭାବରେ ଗୋହତ୍ୟାଠାରୁ ଦୂରେଇ ରହିବ ଯାହାଦ୍ୱାରା ତୁମେ ଭାରତର ବାସିନ୍ଦାମାନଙ୍କ ହୃଦୟ ଜୟ କରିପାରିବ ଏବଂ ଏହି ଦେଶର ପ୍ରଜା ରାଜଭକ୍ତିର ବନ୍ଧନରେ ବାନ୍ଧି ହୋଇ ରହିବେ ।"[୨୦]

ପ୍ରସିଦ୍ଧ ପର୍ତ୍ତୁଗୀଜ ଐତିହାସିକ ଫାରି ସୁଜା ମୁସଲମାନମାନଙ୍କ ତତ୍କାଳୀନ ଧର୍ମୀୟ ସହନଶୀଳତା ସମ୍ପର୍କରେ ଲେଖିଛନ୍ତି—

"ହିନ୍ଦୁ ଓ ମୁସଲମାନ ପରସ୍ପରର ସେବା କରନ୍ତି ଏବଂ ମୁସଲମାନ ରାଜାମାନେ ହିନ୍ଦୁମାନଙ୍କୁ ଉଚ୍ଚ ପଦବୀ ତଥା ଉଚ୍ଚ ଶ୍ରେଣୀରେ ନିଯୁକ୍ତି ଦିଅନ୍ତି । ଅନ୍ୟ ଭାଷାରେ ହିନ୍ଦୁମାନଙ୍କ ପ୍ରତି କୌଣସି ଭେଦଭାବ ନଥିଲା ଏବଂ ସେମାନେ ବିନା ବାଧାବିଘ୍ନରେ ନିଜର ଧର୍ମୀୟ ପରମ୍ପରା ଓ ବିଧି ପାଳନ କରୁଥିଲେ । ମୁସଲମାନମାନେ ହିନ୍ଦୁମାନଙ୍କ ଧର୍ମୀୟ ଭାବନା ପ୍ରତି ଗଭୀର ସମ୍ମାନ ପ୍ରଦର୍ଶନ କରୁଥିଲେ ।"[୨୧]

---

(୧୯) ଇଣ୍ଡିଆ ଡିଭାଇଡେଡ୍, ଡଃ. ରାଜେନ୍ଦ୍ର ପ୍ରସାଦ, ପୃ.-୩୯, ବମ୍ବେ ୧୯୪୭

(୨୦) ଇଣ୍ଡିଆ ଡିଭାଇଡେଡ୍, ପୃ.-୩୯

(୨୧) ଇଣ୍ଡିଆ ଡିଭାଇଡେଡ୍, ପୃ.-୩୯

ଭାରତରେ ମୁସଲମାନ ଶାସକମାନେ ପ୍ରାୟ ହଜାର ବର୍ଷ ଶାସନ କରିଛନ୍ତି । ଯଦି ଶକ୍ତି ପ୍ରୟୋଗ କରାଯାଇଥାଆନ୍ତା, ତେବେ ପ୍ରତ୍ୟେକ ଭାରତୀୟକୁ ମୁସଲମାନ କରାଯାଇ ପାରିଥାଆନ୍ତା । କିନ୍ତୁ ଆଜି ଭାରତର ପ୍ରାୟ ଶତକଡା ୮୦ଭାଗ ଲୋକ ଅଣମୁସଲମାନ । ଏହା ପ୍ରମାଣିତ କରେ ଯେ ଧର୍ମ ପରିବର୍ତ୍ତନ ପାଇଁ ମୋଗଲ ରାଜାମାନେ ବଳପ୍ରୟୋଗ କରିନାହାନ୍ତି । ଐତିହାସିକ ଡି ଲେସି ଓଲେରୀ 'ଇସଲାମ ଏଟ୍ ଦ କ୍ରସ୍ ରୋଡ' ପୁସ୍ତକରେ ଉଚିତ କଥା ଲେଖିଛନ୍ତି–

"ଧର୍ମାନ୍ଧ ମୁସଲମାନମାନେ ବିଶ୍ୱସାରା ବ୍ୟାପିଯାଇ ତରବାରୀ ମୁନରେ ବିଜିତ ଜାତିମାନଙ୍କ ଉପରେ ଇସଲାମକୁ ଲଦିଦେଲେ ବୋଲି ଯେଉଁ କିମ୍ବଦନ୍ତୀମାନ ରହିଛି, ଏ ବିଷୟରେ ଇତିହାସ ଅନ୍ତତଃ ସ୍ପଷ୍ଟ କରିଦେଇଛି ଯେ ଏଗୁଡ଼ିକ ଅଜବ ପାରମ୍ପରିକ କାହାଣୀ ଯାହାର ପୁନରାବୃତ୍ତି ଐତିହାସିକମାନେ କରିଆସିଛନ୍ତି ।"

ଦୟା, କ୍ଷମା ବଳରେ ମହାମାନ୍ୟ ମୁହମ୍ମଦ ଲୋକଙ୍କର ହୃଦୟ ଜୟ କରୁଥିଲେ । କୁରଆନର ବାଣୀ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । କୁରଆନ କହେ–

"ଦୁର୍ବ୍ୟବହାରର ଉତ୍ତର ତୁମେ ସଦ୍‌ବ୍ୟବହାର ଦ୍ୱାରା ଦିଅ, ଯାହା ଫଳରେ ତୁମ ସହ ଶତ୍ରୁତା କରୁଥିବା ବ୍ୟକ୍ତି ମଧ୍ୟ ତୁମର ଅନ୍ତରଙ୍ଗ ବନ୍ଧୁ ପାଲଟିଯିବ। (କୁରଆନ-୪୧/୩୪)



# ଉପସଂହାର

ଜିହାଦ ନାମରେ ହେଉଥିବା ଅପପ୍ରଚାରଗୁଡ଼ିକ ବିଭ୍ରାନ୍ତିକର । ଅତ୍ୟାଚାର ବା ଆତଙ୍କବାଦ ସହ ଇସଲାମର କୌଣସି ସମ୍ପର୍କ ନାହିଁ । ଆତଙ୍କବାଦୀଙ୍କର କୌଣସି ଧର୍ମ ନଥାଏ । ସେମାନେ ଦେଖନ୍ତି ନାହିଁ ଯେ ବିସ୍ଫୋରଣରେ କିଏ ମଲା । ଯେଉଁ ବସ, ଟ୍ରେନ, ହୋଟେଲ ବା ସହରରେ ସେମାନେ ବିସ୍ଫୋରଣ କରନ୍ତି, ସେଠି ସବୁ ଧର୍ମର ଲୋକ ଥାଆନ୍ତି ଏବଂ ସମସ୍ତେ ପ୍ରଭାବିତ ହୁଅନ୍ତି । ଯଦି ଆତଙ୍କବାଦ ଇସ୍‌ଲାମର ଧର୍ମଯୁଦ୍ଧ ହୋଇଥାଆନ୍ତା, ତେବେ ଆତଙ୍କବାଦୀମାନେ ଅନ୍ତତଃ ମୁସଲମାନମାନଙ୍କ ମସଜିଦ୍ ଉପରେ ଆକ୍ରମଣ କରନ୍ତେ ନାହିଁ । ଯଦି ଆତଙ୍କବାଦ ସମ୍ପର୍କରେ ଆମ ସାହିପଡ଼ିଶାରେ ଥିବା ମୁସଲମାନଙ୍କର ମତାମତ ନିଆଯାଏ, ବୋଧହୁଏ ଜଣେ କେହି ଏହାକୁ ସମର୍ଥନ କରିବ ନାହିଁ । ମୁସଲମାନମାନଙ୍କ ବିଚାର ସମ୍ପର୍କରେ ସ୍ୱାମୀ ଲକ୍ଷ୍ମୀଶଙ୍କରାଚାର୍ଯ୍ୟ କୁହନ୍ତି–

> "ଆତଙ୍କବାଦ ସମ୍ପର୍କରେ ମୁସଲମାନଙ୍କ ବିଚାର ଜାଣିବା ପାଇଁ ମୁଁ ସହସ୍ର ମୁସଲମାନଙ୍କ ସହ ସମ୍ପର୍କ ସ୍ଥାପନ କରିଛି । ନିଜ ପଡ଼ୋଶୀ ଅଣମୁସଲମାନଙ୍କ ସହିତ ସମସ୍ତଙ୍କର ଭାଇ ବା ମିତ୍ର ଭଳି ସମ୍ପର୍କ ମୁଁ ଦେଖିଲି । ସେମାନଙ୍କ ମଧ୍ୟରୁ କୌଣସି ମୁସଲମାନ ଚାହେଁନା ଯେ ନିର୍ଦୋଷ ଲୋକମାନଙ୍କୁ କେହି ହତ୍ୟା କରୁ । ଅଣମୁସଲମାନକୁ ଘୃଣା କରୁଥିବା ଆତଙ୍କବାଦର ସମର୍ଥକ ଜଣେ ହେଲେ ମୁସଲମାନ ମୋତେ ମିଳିଲା ନାହିଁ ।"(ଇସଲାମ୍ ଆତଙ୍କ୍ ୟା ଆଦର୍ଶ, ପୃ.୯୨)

ଇସଲାମ ଧର୍ମର ଯୁଦ୍ଧନୀତି ଅନୁସାରେ ଅତ୍ୟାଚାର ଜିହାଦ ନୁହେଁ ବରଂ ଅନ୍ୟାୟ-ଅତ୍ୟାଚାର ବିରୋଧରେ ହେଉଥିବା ସଂଗ୍ରାମର ନାମ ଜିହାଦ୍ । ଅଶାନ୍ତି ଓ ଆତଙ୍କ ସୃଷ୍ଟି କରିବା ଜିହାଦ୍ ନୁହେଁ, ବରଂ ଏହା ବିରୋଧରେ ଲଢିବା ଜିହାଦ୍ । ଜିହାଦ୍ ଏକ ଉପାସନା ଏବଂ ଏକ ପବିତ୍ର ଧର୍ମାଚାର । ଆତଙ୍କବାଦ ସହ ଏହାକୁ ଯୋଡ଼ିବା ସତ୍ୟର ଅପମାନ, ଧର୍ମର ଅପମାନ ଏବଂ ମାନବିକତାର ଅପମାନ।



# ଇକ୍‌ରା ରିସର୍ଚ୍ଚ ଏକାଡେମୀ ଦ୍ୱାରା ପ୍ରକାଶିତ ଶକୀଲ ଅହମଦଙ୍କ ପୁସ୍ତକ

## ୧. ବେଦ, ବାଇବଲ ଏବଂ କୁରଆନରେ ଏକେଶ୍ୱରବାଦ

ସମସ୍ତଙ୍କର ମାଲିକ ଜଣେ । ଏକ ଈଶ୍ୱରଙ୍କୁ ବିଭିନ୍ନ ଭାଷାରେ ବିଭିନ୍ନ ନାମରେ ଡକାଯାଏ । ପୃଥିବୀପୃଷ୍ଠରେ ଆସିଥିବା ସବୁ ଦିବ୍ୟଗ୍ରନ୍ଥଗୁଡ଼ିକ ଈଶ୍ୱର ଏକ ବୋଲି କହିଛନ୍ତି । ଇସ୍‌ଲାମ ଧର୍ମର ଏକେଶ୍ୱରବାଦର ସିଦ୍ଧାନ୍ତଟି ଯେ ହିନ୍ଦୁ, ଖ୍ରୀଷ୍ଟିୟାନ, ୟହୁଦୀ ତଥା ମୁସଲମାନମାନଙ୍କ ସର୍ବୋଚ୍ଚ ଗ୍ରନ୍ଥ ବେଦ, ବାଇବଲ ଓ କୁରଆନରେ ସମାନ ଭାବରେ ରହିଛି, ଏହା ଲେଖକ ପ୍ରମାଣିତ କରିଛନ୍ତି ତାଙ୍କର ଏହି ଗବେଷଣାଧର୍ମୀ ପୁସ୍ତକଟିରେ । ଏଥିରେ ଓଡ଼ିଆଭାଷୀ ମୁସଲମାନମାନଙ୍କୁ 'ତୌହିଦ୍' ବା ଏକେଶ୍ୱରବାଦ ତତ୍ତ୍ୱ ସମ୍ପର୍କରେ ସ୍ପଷ୍ଟ ଧାରଣା ଦେବା ସହିତ ଚାରିଗୋଟି ଭିନ୍ନ ଭିନ୍ନ ଧର୍ମଗ୍ରନ୍ଥର ଅନୁଗାମୀମାନଙ୍କୁ ଏକତା ଓ ଭ୍ରାତୃତ୍ୱର ବନ୍ଧନରେ ବାନ୍ଧି ରଖିବାର ଏକ ସୁନ୍ଦର ପ୍ରୟାସ କରିଛନ୍ତି ଲେଖକ । ପୁସ୍ତକଟି ସାମ୍ପ୍ରଦାୟିକ ସମନ୍ୱୟର ଉନ୍ନତି ପଥରେ ସହାୟକ ହୋଇପାରିବ ।

## ୨. ଇସ୍‌ଲାମ ଏବଂ ମାନବିକତା

ଏବେ ଇସ୍‌ଲାମ ଏକ ବର୍ବର ଓ ଅମାନବୀୟ ଧର୍ମ ରୂପେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟିଯାଇଛି । ଜନସମାଜରେ ଏହି ଧର୍ମ ବିଷୟରେ ଅନେକ ଭ୍ରମଧାରଣା ବଦ୍ଧମୂଳ ହୋଇରହିଛି, ଯଥା—ଏହା ଏକ ନିଷ୍ଠୁର ଧର୍ମ, ତରବାରୀ ମୁନରେ ଏହାର ପ୍ରସାର ହୋଇଛି, ଅନ୍ୟାୟ ଓ ଆତଙ୍କବାଦର ଏହା ଶିକ୍ଷା ଦିଏ ଏବଂ ଏଥିରେ ଦୟା, ପ୍ରେମ ବା ମାନବିକତା ନାହିଁ ଇତ୍ୟାଦି ଇତ୍ୟାଦି । ଏହି ପୁସ୍ତକଟିରେ ଲେଖକ ଏହି ଭ୍ରମ ଧାରଣାଗୁଡ଼ିକ ଦୂର କରିବାର ପ୍ରୟାସ କରିଛନ୍ତି ଏବଂ ଇସ୍‌ଲାମ ଯେ ଏକ ସମ୍ପୂର୍ଣ୍ଣ ମାନବବାଦୀ ଧର୍ମ ଏହା ପ୍ରମାଣିତ କରିଛନ୍ତି ।

## ୩. ଇସ୍‌ଲାମ ପରିଚୟ

ଇସ୍‌ଲାମ ଏକ ଶାନ୍ତିପ୍ରିୟ ଧର୍ମ । ଏଥିରେ ଅସତ୍ୟ, ଅନ୍ୟାୟ, ଅତ୍ୟାଚାର ବା ଆନଙ୍କବାଦର କୌଣସି ସ୍ଥାନ ନାହିଁ । ଇସ୍‌ଲାମର ପରିଚୟ ପ୍ରଦାନ କରି ପ୍ରକାଶ ପାଇଛି ଲେଖକଙ୍କର ଅନୁପମ ଗବେଷଣାତ୍ମକ ଗ୍ରନ୍ଥ 'ଇସ୍‌ଲାମ ପରିଚୟ' । ଏଥିରେ ଧର୍ମର ସିଦ୍ଧାନ୍ତ ଓ ମୌଳିକ ନୀତି ନିୟମଗୁଡ଼ିକ ବିଷୟରେ ସୁନ୍ଦର ଭାବରେ ଆଲୋଚନା କରାଯାଇଛି । ଇସ୍‌ଲାମ ଯେ ଏକ ଆଦିଧର୍ମ ତଥା ଏକ ଆଦର୍ଶ ଜୀବନଶୈଳୀ, ଲେଖକ ବିଭିନ୍ନ ପ୍ରାଚୀନ ଧର୍ମଶାସ୍ତ୍ରଗୁଡ଼ିକର ସହାୟତାରେ ଏହା ପ୍ରମାଣିତ କରିଛନ୍ତି । ଧର୍ମ କ'ଣ, ଧର୍ମର ଆବଶ୍ୟକତା, ଶାନ୍ତି ପ୍ରତିଷ୍ଠାରେ ଧର୍ମର ଭୂମିକା, ଗୋଟିଏ ଜାତି-ଗୋଟିଏ ଧର୍ମ, ମଣିଷର ପ୍ରାକୃତିକ ଧର୍ମ, ଧର୍ମରେ ନୈତିକ ମୂଲ୍ୟବୋଧ ଆଦି ବିଷୟ ଉପରେ ଆଲୋଚନା ଏଥିରେ ସ୍ଥାନ ପାଇଛି । ଏହାବ୍ୟତୀତ ଇସ୍‌ଲାମରେ ଥିବା ମାନବବାଦ ଓ ମାନବାଧିକାରଗୁଡ଼ିକ ଉପରେ ବିସ୍ତୃତ ଆଲୋଚନା ମଧ୍ୟ ଗ୍ରନ୍ଥଟିର ଅନ୍ୟତମ ବୈଶିଷ୍ଟ୍ୟ । ଏହି ଗ୍ରନ୍ଥଟି ସବୁ ଧର୍ମର ଭାଇଭଉଣୀଙ୍କୁ ଇସ୍‌ଲାମକୁ ବୁଝିବାରେ ସାହାଯ୍ୟ କରିବ । ଏହାବ୍ୟତୀତ ସାମ୍ପ୍ରଦାୟିକ ସଦ୍‌ଭାବର ଉନ୍ନତି ତଥା ତୁଳନାତ୍ମକ ଧର୍ମ ଅଧ୍ୟୟନ କ୍ଷେତ୍ରରେ ମଧ୍ୟ ଏହା ସହାୟକ ହେବ ।

## ୪. ପୁନର୍ଜୀବନ କାହିଁକି

ପୁନର୍ଜୀବନ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଓ ୟହୁଦୀ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ରହିଥିବା ଏକ ସମଭାବାପନ୍ନ ଚିନ୍ତାଧାରା । ଏହା ଇସ୍‌ଲାମର ଏକ ମୌଳିକ ଶିକ୍ଷା ଏବଂ ବେଦ ଓ ବାଇବଲ୍ ସମ୍ମତ ଏକ ସିଦ୍ଧାନ୍ତ । ଯଦିଓ ପୁନର୍ଜୀବନର ସ୍ୱରୂପ ସମ୍ପର୍କରେ କିଛିଟା ମତଭେଦ ରହିଛି, ତଥାପି କର୍ମଫଳ ଯେ ଏହାର ଉଦ୍ଦେଶ୍ୟ—ଏ ବିଷୟରେ ଈଶ୍ୱରବାଦୀମାନଙ୍କ ମଧ୍ୟରେ ମତଭେଦ ନାହିଁ । ପୁନର୍ଜୀବନ, ପରଲୋକ, ସ୍ୱର୍ଗ ଓ ନର୍କ—ସମସ୍ତ ଈଶ୍ୱରବିଶ୍ୱାସୀମାନଙ୍କ ନିକଟରେ ଏକ ସତ୍ୟ ରୂପେ ଗୃହୀତ ଏବଂ ମନୁଷ୍ୟ ଯେ ନିଜ କର୍ମ ପାଇଁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ, ଏହାକୁ କୌଣସି ଧର୍ମମତ ଅସ୍ୱୀକାର କରେନାହିଁ ।

ଏହି ପୁସ୍ତକଟିରେ ଲେଖକ ଇସ୍‌ଲାମରେ ଥିବା ପୁନର୍ଜୀବନର ସିଦ୍ଧାନ୍ତର ତର୍ଜମା କରିବା ସହ ଏହାର ଆବଶ୍ୟକତା ଓ ଉପକାରୀତା ଉପରେ ଆଲୋକପାତ କରିଛନ୍ତି । ମନୁଷ୍ୟକୁ କିପରି ସଂସାରର ଶ୍ରେଷ୍ଠତମ ପ୍ରାଣୀ ରୂପେ ସୃଷ୍ଟି କରାଯାଇଛି, ତା' ସୃଷ୍ଟିର ଉଦ୍ଦେଶ୍ୟ କ'ଣ, ନିଜ କର୍ମ ପାଇଁ ସେ କାହିଁକି ଉତ୍ତରଦାୟୀ ଏବଂ ଏହି ଉତ୍ତରଦାୟିତ୍ୱବୋଧ ମନୁଷ୍ୟ ଜୀବନକୁ କିଭଳି ଭାବେ ପ୍ରଭାବିତ କରିଥାଏ.

ଏହା ସୁନ୍ଦର ଭାବରେ ଆଲୋଚନା କରିଛନ୍ତି । ପୁସ୍ତକଟି ପ୍ରତ୍ୟେକ ମଣିଷକୁ ନିଜର ଉତ୍ତରଦାୟିତ୍ୱ ସମ୍ପର୍କରେ ସଚେତନ କରିବାରେ ସାହାଯ୍ୟ କରିପାରିବ ।

## ୫. ମହାମାନ୍ୟ ମୁହମ୍ମଦ

ଗ୍ରନ୍ଥଟି ମହାପୁରୁଷ ମୁହମ୍ମଦଙ୍କ ଜୀବନୀ ଓ ଆଦର୍ଶର ଏକ ରସାଳ ଉପସ୍ଥାପନା । ତର୍କସଙ୍ଗତ ଓ ତଥ୍ୟଭିତ୍ତିକ ବିଷୟବସ୍ତୁ ଉପରେ ଆଧାରିତ ଏହା ଏକ ଗବେଷଣାଧର୍ମୀ ଗ୍ରନ୍ଥ ଯେଉଁଥିରେ ଲେଖକ ମହାମାନ୍ୟ ମୁହମ୍ମଦଙ୍କ ଚଳଣୀ ଓ ଚରିତ୍ର ତଥା ନୀତି ଓ ଆଦର୍ଶର ବର୍ଣ୍ଣନା କରିବା ସହିତ ସେ ଯେ ଜଣେ ଈଶ୍ୱରଦୂତ, ଏହା ପ୍ରମାଣିତ କରିଛନ୍ତି । ନଅଟି ଅଧ୍ୟାୟବିଶିଷ୍ଟ ଏହି ଗ୍ରନ୍ଥଟିରେ ମହାମାନ୍ୟ ମୁହମ୍ମଦଙ୍କ ସଂକ୍ଷିପ୍ତ ଜୀବନୀ, ବିଭିନ୍ନ ଐତିହାସିକ, ଦାର୍ଶନିକ ଓ ଚିନ୍ତକମାନଙ୍କ ମତାମତ, ଈଶ୍ୱରଦୂତମାନଙ୍କ ଅବତରଣର ପରମ୍ପରା ଓ ଏହାର କାରଣ, ସେମାନଙ୍କ ଶିକ୍ଷା, ସେମାନଙ୍କ ବୈଶିଷ୍ଟ୍ୟ, ମହାମାନ୍ୟ ମୁହମ୍ମଦଙ୍କ ଈଶ୍ୱରଦୂତ ହେବାର ପ୍ରମାଣ, ତାଙ୍କ ଚମତ୍କାରିତା ଓ ଭବିଷ୍ୟବାଣୀ, ତାଙ୍କ ହିତୋପଦେଶ, ବିଭିନ୍ନ ଧର୍ମଗ୍ରନ୍ଥରେ ତାଙ୍କ ଆଗମନର ଅଗ୍ରସୂଚନା ଓ ସେଗୁଡ଼ିକରେ ତାଙ୍କ ଦର୍ଶନର ସାମଞ୍ଜସ୍ୟ, ପବିତ୍ର କୁର୍‌ଆନର ବୈଜ୍ଞାନିକ ପ୍ରମାଣସିଦ୍ଧତା ଆଦି ପ୍ରସଙ୍ଗ ଉପରେ ତଥ୍ୟଭିତ୍ତିକ ଆଲୋଚନା ସ୍ଥାନ ପାଇଛି । ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ସମ୍ପର୍କରେ ଜାଣିବାପାଇଁ ଏହା ଏକ ଅତି ଉପାଦେୟ ଗ୍ରନ୍ଥ ।

## ୬. ଜିହାଦ୍ ଓ ଆତଙ୍କବାଦ

ସାଂପ୍ରତିକ ପରିସ୍ଥିତିରେ ଜିହାଦ୍ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ବିଭିନ୍ନ ସ୍ଥାନରେ ହେଉଥିବା ଆତଙ୍କବାଦୀ କାର୍ଯ୍ୟକଳାପ ଜିହାଦ୍ ସମ୍ପର୍କରେ ବହୁ ଲୋକଙ୍କ ମନରେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ଏହି ପୁସ୍ତକରେ ଲେଖକ ଜିହାଦ୍‌ର ତାତ୍ପର୍ଯ୍ୟ ବର୍ଣ୍ଣନା କରିଛନ୍ତି । ଇସ୍‌ଲାମର ଯୁଦ୍ଧତତ୍ତ୍ୱର ତୁଳନାତ୍ମକ ବ୍ୟାଖ୍ୟା କରି ଲେଖକ ଧର୍ମଯୁଦ୍ଧ ଓ ଆତଙ୍କବାଦ ମଧ୍ୟରେ ଥିବା ପ୍ରଭେଦକୁ ସ୍ପଷ୍ଟ କରିଛନ୍ତି । ପୁସ୍ତକଟି ଜିହାଦ୍ ସମ୍ପର୍କରେ ଥିବା ଅନେକ ଭ୍ରାନ୍ତି ଦୂର କରିବାରେ ସହାୟକ ହେବ ।

# ଲେଖକଙ୍କ ଅନ୍ୟାନ୍ୟ କୃତି




















IQRA RESEARCH ACADEMY
Metro Manzil, Dewan Bazar, Cuttack - 753 001
Cell : 9437266208
E-mail : iqraresearch@gmail.com

www.iqraresearch.net